ସାହିତ୍ୟ ଅକାଦେମି ପୁରସ୍କାରପ୍ରାପ୍ତ ହିନ୍ଦୀ କବିତା ଗ୍ରନ୍ଥ

# ଅଗଣା ସେପାଖ ଦ୍ୱାର

## ଅଜ୍ଞେୟ

ଅନୁବାଦ ।। ସୌଭାଗ୍ୟ ମଂଜରୀ ତ୍ରିପାଠୀ



*Aganaa Sepakha Dwara:* Oriya translation by Soubhagya Manjari Tripathy of Agyeya's Akademi award-winning Hindi Poetry Collection 'Aangan Ke Par Dvar', Sahitya Akademi, New Delhi: 2000, Price: Rs55.

ପ୍ରଥମ ପ୍ରକାଶ: ୨୦୦୦


ISBN: 81-260-0973-X

ସାହିତ୍ୟ ଅକାଦେମି
ରବୀନ୍ଦ୍ର ଭବନ, ୩୫ ଫିରୋଜଶାହ ରୋଡ, ନୂଆଦିଲ୍ଲୀ ୧୧୦୦୦୧
ବିକ୍ରୟ କେନ୍ଦ୍ର: ସ୍ୱାତୀ, ମନ୍ଦିର ମାର୍ଗ, ନୂଆଦିଲ୍ଲୀ ୧୧୦୦୦୧
ଜୀବନତାରା, ୨୩୯/୪୪ଏକ୍ସ, ଡାଇମଣ୍ଡ ହାର୍‌ବର୍ ରୋଡ,
କଲିକତା ୭୦୦୦୫୩
ଗୁନା ବିଲ୍‌ଡିଂ, ଦ୍ୱିତୀୟ ମହଲା, ୪୪୩-୪୪୫, ଆନା ସାଲାଇ,
ତେନାମ୍‌ପେଟ୍, ଚେନ୍ନାଇ ୬୦୦୦୧୮
୧୭୨ ମୁମ୍ବାଇ ଗ୍ରନ୍ଥ ସଂଗ୍ରହାଳୟ ମାର୍ଗ, ଦାଦର, ମୁମ୍ବାଇ ୪୦୦୦୧୪
ସେଣ୍ଟ୍ରାଲ କଲେଜ କ୍ୟାମ୍ପସ, ୟୁନିଭର୍ସିଟି ଲାଇବ୍ରେରୀ ବିଲ୍ଡିଂ
ଡ. ଆମ୍ବେଦକର ଭୀଧି, ବାଙ୍ଗାଲୋର ୫୬୦୦୦୧

ମୂଲ୍ୟ: ୫୫ଟଙ୍କା

ଅକ୍ଷର ବିନ୍ୟାସ:
ଜଗନ୍ନାଥ ଲାମିନେଟର
ଜଗନ୍ନାଥ ଲେନ୍, ବାଦାମବାଡ଼ି, କଟକ-୭୫୩୦୧୨

ମୁଦ୍ରଣ:
ଡି.ଜି. ଅଫ୍‌ସେଟ୍
୯୬/ଏନ୍, ମହାରାଣୀ ଇନ୍ଦିରାଦେବୀ ରୋଡ
ବେହେଲା, କଲିକତା-୭୦୦୦୬୦

# ଅନୁକ୍ରମ

# ସରସ୍ୱତୀ—ପୁତ୍ର

ମନ୍ଦିର ଭିତରେ ସଭିଏଁ ସେମାନେ
ଧୁଆ—ପୋଛା ଲଙ୍ଗଳା—ମୁକୁଳା
ଖୋଲା ଗଳାରେ
ମୁଖର ସ୍ୱରରେ
ଅତି—ପ୍ରଗଲ୍‌ଭତାରେ
ଗାଇ ଯାଉଥିଲେ ରାମ—ନାମ ।
ଭିତରେ ସଭିଏଁ
ମୂକ, ବଧିର, ଅର୍ଥହୀନ ଜଳ୍ପକ,
ନିର୍ବୋଧ, ସରଳ, ବାଙ୍ଗରା,
ଅଥଚ ବାହାରେ ଯେତିକି ଶିଶୁ,
ସେତିକି ହିଁ କୁହାଳିଆ ।

ବାହାରେ ସେ
ହଜେଇଲା—ପାଇଲା, ମଇଳା—ତୋଫା
ଦିନକୁ ଦିନ ହେଉଥିଲା ବୟସ୍କ,
ଦିନକୁ ଦିନ ଝାପ୍‌ସା ଆଖିରେ
ସୁସ୍ପଷ୍ଟ ଦେଖିପାରୁଥିଲା ;
ଚିହ୍ନି ପାରୁଥିଲା ରୂପ,
ପାଉଥିଲା ବାଣୀ ଆଉ ବୋଧ୍ୟ ଶବ୍ଦାବଳୀ
ଦିନକୁ ଦିନ କିନ୍ତୁ
ଅଧିକରୁ ଅଧିକ ଖନେଇ ହେଉଥିଲା,
ଦିନକୁ ଦିନ କାକୁସ୍ଥ ହୋଇଯାଉଥିଲା ସେ
ବରଡ଼ାପତ୍ର ପରି ଥରି ଥରି ।

□□

# ଆଙ୍କିଦେ, ଚିତ୍ରକର

ଆଂକି ଦେ, ଚିତ୍ରକର
ମୋ ପାଇଁ ଏକ ଚିତ୍ର ଆଂକି ଦେ ।

ପ୍ରଥମେ ସମୁଦ୍ର ଆଂକ୍ !
ବିସ୍ତୀର୍ଣ୍ଣ, ପ୍ରଗାଢ଼, ନୀଳ,
ଉପର ଚଳଚଞ୍ଚଳ,
ପବନର ଥାପୁଡ଼ାରେ ଆହତ,
ଶତ—ଶତ ତରଙ୍ଗରେ ଉଦ୍‌ବେଳିତ
ଫେନୋର୍ମିରେ ଭଙ୍ଗା, କିନ୍ତୁ ପ୍ରତ୍ୟେକ ଭାଙ୍ଗିବାରେ
ଅପାର ଶୋଭା ନେଇ
ଚଞ୍ଚଳ, ଉତ୍ସୃଷ୍ଟ
—ଯେପରି ଜୀବନ ।

ହଁ, ପ୍ରଥମେ ସମୁଦ୍ର ଆଂକ୍ :
ତଳେ ଅଗାଧ, ଅତଳ
ଅସଂଖ୍ୟ ଚାପ, ଦୁଶ୍ଚିନ୍ତା, ଆଂଚୁଡ଼ା ଆଉ ମୋଡ଼ାଣକୁ
ଆପଣା ତରଳ ଏକ ରୂପତାରେ ସାଉଁଟି ରଖି,
ଅସଂଖ୍ୟ ଗତି ଆଉ ପ୍ରବାହଙ୍କୁ
ଆପଣାର ଅଖଣ୍ଡ ସ୍ଥିରତାରେ ସମାହିତ କରି,
ସ୍ୱାୟତ୍ତ,

ଅଚଞ୍ଚଳ,
–ଯେପରି ଜୀବନ...
ସାଗର ଆଂକି ସାରି ପୁଣି ଆଂକ୍ ଏକ ଡିଅଁତା ମାଛ :
ଉପରେ ଶୂନ୍ୟରେ
ଯେଉଁଠି ଉପରେ ବି ଅଗାଧ ନୀଳିମା ଅଛି
ତରଙ୍ଗୋର୍ମି ଅଛି,
ହଲଚଲ୍ ହେବା ଆଉ ଭାଙ୍ଗିଯିବା ଅଛି,
ଦ୍ରବ ଅଛି, ଚାପ ଅଛି,
ଏବଂ ତାକୁ ଘେରି ସେଇ ଅବିକଳ ସୂକ୍ଷ୍ମତା ରହିଛି
ଯହିଁରେ ସବୁ ଆନ୍ଦୋଳନ
ସ୍ଥିର ସମାହିତ ହୁଅନ୍ତି ;
ଉପରେ ଶୂନ୍ୟରେ
ପବନର ଏକ ବୁଦ୍‌ବୁଦ ମାତ୍ର
ପିଇବାପାଇଁ ଡେଇଁ ପଡ଼ିଥିବା ମାଛ
ଯାହାର ମୋଡ଼ା ହୋଇଥିବା ଦେହବଲ୍ଲୀରେ
ତା'ର ଜିଜୀବିଷାର ଉତ୍କଟ ଆତ୍ତୁରତା ମୁଖର।
ଯେପରି ତଡ଼ିତ୍‌ଲତାରେ ଦୁଇଟି ମେଘଙ୍କ ମଝିର
ଆକର୍ଷଣ ସବୁ ଚମକି ଯାଆନ୍ତି–
ବକ୍ର ଅଜଣା, ଅପ୍ରସୃତ, ଅସଂଧିତ ସବୁ
ତରଳି ଯାଆନ୍ତି।

ସେଇ ପ୍ରାଣଙ୍କର ଏକବୁଦ୍‌ବୁଦ ମାତ୍ର ପିଇନେବା ପାଇଁ
ସେଇ ଅନନ୍ତ ନୀଳିମାରେ ଛାଇଗଲେ ହିଁ
ଯହିଁରେ ସେ ଜନ୍ମିଛି, ବଞ୍ଚିଛି,
ପାଳିତ ହୋଇଛି, ବଞ୍ଚିବ,

ସେଇ ଦ୍ୱିତୀୟ ଅନନ୍ତ ପ୍ରଗାଢ଼ ନୀଳିମା ଆଡ଼କୁ
ବିଦ୍ୟୁଲ୍ଲତାର ଚମକ ପରି
ନିଜର ଇୟତ୍ତାର ସାରା ଆକୁଳ କ୍ଷଣ ସହିତ
ଡେଇଁ ଉଠିଥିବା
ଏକ ଏକଲା ମାଛ।

ତିଆରି ଦେ, ଚିତ୍ରକର,
ଏଇ ଚିତ୍ର ମୋ'ପାଇଁ ଆଂକିଦେ।
ମାଟିରେ ଗଢ଼ା, ପାଣିରେ ଛିଞ୍ଚା, ପ୍ରାଣାକାଶର ପିପାସୁ
ସେଇ ଅନ୍ତହୀନ ଉଦୀକ୍ଷାକୁ
ତୁ ଅନ୍ତହୀନ କାଳପାଇଁ ଫଳକ ଉପରେ ଟାଙ୍ଗିଦେ
ଯେହେତୁ ଏଇ ବାଂଛା ମୋ'ର, ମୋ'ର, ମୋ'ର—
ଯେପରିକି ପ୍ରାଣଂକର,
ଯେଉଁ ବୁଦ୍‌ବୁଦ ଆଡ଼େ ମୁଁ ହୋଇଛି ଉଦଗ୍ର
ସିଏ ମତେ ଟାଣିରହୁ ଅନ୍ତହୀନ କାଳଯାଏ :
ମୁଁ ଉଦଗ୍ର ହିଁ ରହିଥାଏ
—କିଏ ଜାଣେ କେବେ କାଳେ—
ସେ ମତେ ଶୋଷି ନେଇପାରେ।

□□

# ଭିତର–ଜାଗ୍ରତ ଦାତା

ମତୁଆଲା
ସମୁଦ୍ର ଲହରାଇଲା ।
ତରଙ୍ଗର ପକ୍ଷଯୁକ୍ତ ବୀଣାରେ
ଭରା ଉଲ୍ଲାସରେ ପବନ
ଗାଇଲା ।
ଫେଣର ଝାଲରଦିଆ ମଖମଲି ଗାଲିଚା ଉପରେ
ମଦାଳସୀ କିରଣ–ଅପ୍‌ସରାମାନେ
ଆପଣାର ଭାରହୀନ ପାଦ
ଥିରିଥିରି ଥାପିଲେ–
ମୁହୁର୍ମୁହୁଃ ବଦଳୁଥିବା ଅଳତାଚିହ୍ନ ଛାଡ଼ି
ଜଳ ଉପରେ ।
ଦୂର ଝାପ୍‌ସା କୂଳ
ଝୁମିଝୁମି ଆସିଲା, ଟଳମଟଳ ହେଲା
ମୋ ଭିତରେ ଜାଗ୍ରତ
ଦାତା :
କହିଲା :
ନିଅ, ଏଇ ସାଗର
ତୁମକୁ ମୁଁ ଦେଲି ।

ସବୁଜିମା ବିଛେଇ ହୋଇଗଲା ଭୂଖଣ୍ଡରେ
ଘାଟିର ପାଦଚଲା ବାଟ

ଲାଜେଇଲା ଆଉ ଆଢ଼ ହେଲା–
ରହିପାରିଲାନି କିନ୍ତୁ ଚଞ୍ଚଳା
ପୁଣି ଉହୁଙ୍କି ଅନେଇ ଦେଇଗଲା ।
ସରୁ ଡେଙ୍ଗା ଗଛଶିଖରେ
ନୂଆ ଉକୁଟିଥିବା ରଙ୍ଗିନ କିଶଳୟ
ଆକାଶର କପାଳରେ ଆଙ୍କିଗଲା ଜୟତିଳକ ।
ଗହମର ଶାଗୁଆକେଣ୍ଡାର ଗହଳ ଭିତରେ
କେବେ ରାଇର ଧଳା
କେବେ ସୋରିଷର ହଳଦିଆ ଫୁଲ–ଜ୍ୟୋସ୍ନା
ଉକୁଟି ଗଲା ।
କେବେ ପୋସ୍ତକର ଲାଲିମା ସହସା ଚମକାଇଗଲା
କେବେ ଲଘୁ ନୀଳିମା ଅତସୀର
ଚମକିଲା ଏବଂ ଲୁଚିଗଲା ।

ମୋ'ଭିତରେ ପୁଣି ଚେଇଁଲା
ଦାତା :
ଏବଂ ମୁଁ ପୁଣି ନୀରବ ସଂକଳ୍ପ କଲି :
ନିଅ, ଏଇ ଶାଗୁଆ ଧରିତ୍ରୀ–
ଏଇ ସବତ୍ସା କାମଧେନୁ–
ମୁଁ ତୁମକୁ ଦେଲି :
ଆକାଶ ବି ତୁମକୁ ଦେଲି :
ଏଇ ବଉଳ, ଏଇ ଅଙ୍କୁର, ଏଇ ରଙ୍ଗ,
ଏଇ ଫୁଲ, ଏଇ କିଶଳୟ,
ଏଇ କ୍ଷୀରଭରା ଧାନଶିଁଶା,
ମୁଁ ତୁମକୁ ଦେଲି :
ଏଇ ଅଙ୍କାବଙ୍କା ରେଖା,

ହିଡ଼ ଉପରେ ଖେଳୁଥିବା ଛେଳିଛୁଆ
ଏଇ ଗାଡ଼ିଆ, ଏଇ ଗଳି
ମୌନ ଠିଆ ପର ତୋଳିଥିବା
ଏଇ ସାରସଙ୍କ ଯୋଡ଼ି—
ଏଇ ରୂପ ଯାହା କେବଳ ମୁଁ ଦେଖିଲି,
ଏଇ ଅନୁଭବ ଅଦ୍ୱିତୀୟ,
ଯାହା କେବଳ ମୁଁ ବଞ୍ଚିଲି,
ସବୁ ଦେଲି ତୁମକୁ ।

ଏକ ସ୍ମୃତିରେ ମନ ପବିତ୍ର ହୋଇ ଆସିଲା ।
ଏକ ଶ୍ରଦ୍ଧାରେ ଆହୂତ ପ୍ରାଣ ଗାଇଲେ ।
ଏକ ସ୍ନେହର ଜୁଆର ବଢ଼ି ଆସିଲା ଦୁର୍ନିବାର ।
ମୁଁ ବୁଡ଼ିଲି ନାହିଁ, ବଢ଼ିଲି, ଖସିଲି,
ଭିତରେ ପୁଣି ଉକୁଟି ଆସିଲା
ଦାତା ।
ହସିଲା, ହସିହସି ତୁମକୁ ଡାକିଲା ।
ନିଅ, ଏଇ ସ୍ମୃତି, ଏଇ ଶ୍ରଦ୍ଧା, ଏଇ ହସ,
ଏଇ ଆହୂତ, ସ୍ୱର୍ଣପୂତ ଭାବ
ଏଇ ମୁଁ, ଏଇ ତୁମେ,
ଏଇ ଉକୁଟିବା, ଏଇ ଜୁଆର, ଏଇ ପ୍ଲାବନ
ଏଇ ସ୍ନେହ, ଏଇ ଅବୁଡ଼ା ଉଲ୍ଲାସ—
ସବୁ ତୁମକୁ ଦେଲି ।
ସବୁ
ତୁମକୁ
ଦେଲି ।

□□

# ଅଂଧାରରେ ଦୀପ

ଅନ୍ଧାର ଥିଲା :
ସବୁକିଛି ଜଣାଚିହ୍ନା ଥିଲା
ଛୁଆଁ ହୋଇ ନ ଥିବ କେବେ ବି
ତଥାପି
ସବୁକିଛିର ସଂଯତି ଥିଲା
ସଂହତି ଥିଲା
ସ୍ୱୀକୃତି ଥିଲା ।

ଦୀପ ଜଳାଇଲା :
ଅର୍ଥହୀନ ଆକାରଙ୍କର ଏଇ
ଅର୍ଥହୀନତର ଭିଡ଼—
ନିରର୍ଥକତାର ସଂକୁଳ—
ନିର୍ଜଳ ପାରାବାର
ନକାରମାନଙ୍କର—
ଏଇ ଉତ୍‌ଥାନ ଆସିଲା ।

କେଉଁଆଡ଼େ ଗଲା ସେ
ଯିଏ ସବୁକିଛିକୁ
ରତର ଛାଞ୍ଚରେ
ସଂପାଦି ରଖିଥିଲା ?

□□

# ପାଖ ଏବଂ ଦୂର

ଯେଉଁମାନେ ପାଖରେ ରହିଲେ
ସେମାନେ ହିଁ ତ ସବୁଠାରୁ ଦୂରରେ ରହିଲେ :
ଶ୍ରଦ୍ଧାରେ ଯେଉଁମାନେ
ବାରଂବାର
'ଉଠ୍-ଉଠ୍' ହାତ ଯୋଡ଼ିଲେ
ନଇଁ ନଇଁ ପୁଣି ପାଦ ଛୁଇଁଲେ
ସେହି ଦୟାଳୁ, ବତ୍ସଳ, ସ୍ନେହୀମାନେ ତ
ସବୁଠାରୁ କ୍ରୂର ହେଲେ ।

ଯେଉଁମାନେ ଚାଲିଗଲେ
ଲାତ ମାରି ହାଡ଼ଗୋଡ଼ ଭାଙ୍ଗିଦେଇ ଗଲେ ।
କିନ୍ତୁ ଯେଉଁ ପାଦ
ମହାକ୍ରୋଧରେ ଖୋଳି ପକାଇଲେ ମାଟି
ପୁଣି ଉପେକ୍ଷାରେ ଦଳି ମକ୍‌ଚିଗଲେ
ସେମାନେ ହିଁ ଅଜାଣତରେ
ନୂଆଖତ ଦେଇ ତାକୁ ପୋତି ଦେଇଗଲେ :
ତା'ଭିତରେ ସେମାନେ ହିଁ
ନିଆରା ଅଙ୍କୁରଟିଏ ରୋପି ଦେଇଗଲେ ।
ଯେଉଁମାନେ ଚାଲିଗଲେ,
ଯେଉଁମାନେ ଛାଡ଼ିଗଲେ,
ଯେଉଁମାନେ ଚେର କାଟି, ମାଟି ଉପାଡ଼ି

ବାଛି ବାଛି ଡାଳ ସବୁ ମୋଡ଼ି ଭାଙ୍ଗି ଦେଲେ
ସେମାନେ ସହଜରେ ନାଳ ଖୋଳି
ସମୁଦ୍ର ସହ ସମୁଦ୍ରକୁ ଯୋଡ଼ି ଦେଇଗଲେ।
ପୋଛିଗଲେ ଅସ୍ତିତ୍ୱ,
ହେଲେ ସେମାନେ
ଜୀବନ ତ ମୋତେ ସଅଁପି ଦେଇଗଲେ।

□□

# ପରିଚୟ

ତୁମେ
ଥିଲ ସେମିତି :
ଢଳନ୍ତା ଖରାର କିନ୍ତୁ ଖେଳ ଥିଲା କିଛି—
ଧୋଇ ଦେଇଥିଲା ଯାହା
ଢଳନ୍ତା ବୟସର ଦାଗ ସବୁକୁ ।
ଭୁଲ୍ ଥିଲା
କିନ୍ତୁ
ହୋଇଗଲା ପରିଚୟ—
ମୁଁ ବି ଗାଧୋଇ ଆସିଲି
ସ୍ମୃତିରେ ।

□□

# ହ୍ରଦ କୂଳ

ହ୍ରଦର ନିର୍ଜନ କୂଳ
ଏବଂ ସେଇ ସହସା-ବ୍ୟାପ୍ତ ମୌନତାର
ମୁହୂର୍ତ୍ତଟିଏ ଆମର।
ସେପରି ସୂର୍ଯ୍ୟାସ୍ତ ଆଉ ଦେଖି ନାହିଁ
ଦିଗନ୍ତରେ ସେହିପରି ସ୍ତିମିତ ବିଜୁଳି
ସେପରି ଏକ ଉତ୍ତାଳ ଲହର
ଆଉ ଆସି ନାହିଁ
ସେପରି ମଦିର ପବନ ଆଉ
କେବେ ବହି ନାହିଁ।

ସେପରି କୌଣସି ଶକ୍ତି
ଅକଳ୍ପିତ ଆଉ ଅଯାଚିତ
ପୁଣି କେବେ ଆମ ଉପରେ ଘୋଟି ଆସିନାହିଁ।
ସେପରି କିଛି ଛଳବନ୍ତ କାଳ
ନିଆରା ଆମ ଭାଗ୍ୟରେ ଆଉ କେବେ ଲେଖିନାହିଁ।

ସେପରି ଅଭିସିଞ୍ଚିତ, ଅଭିମନ୍ତ୍ରିତ
ସଘନତମ, ସଂଗୋପନ, କଳ୍ପାନ୍ତ
ଦ୍ୱିତୀୟଥର ଆମେ ବଞ୍ଚିନାହୁଁ
ସେପରି ଶୀତଳ ଅନଳ-ଶିଖା
ନା ପୁଣି ଜଳିଛି,

ନା ଚିରକାଳ ପାଇଁ ଲାଳିତ ହୋଇଛି
ନା ଆମଦ୍ୱାରା କେବେ
ସଂଭଳା ହୋଇଛି ।

ହୋଇପାରେ ବି ଏମିତି–
ଆଉଥରେ ଆପଣାଙ୍କୁ କେବେ
ଦେଇନାହୁଁ ଆମେ
ସେତିକି ସେମିତି ?

□□

# ଅନ୍ତଃରୂପ

ଆରେ ଏଇ ଉପସ୍ଥିତ
ଘେରିଥିବା, ଅପଲକ ଅନେଇଥିବା, ଉଂଡୁଥିବା
ଲୋକ—ଲୋକ—ଲୋକ—ଲୋକ—
ଯାହାଙ୍କୁ କିନ୍ତୁ ବିଧାତା
ମୋ'ପାଇଁ ଦେଲାନାହିଁ
ନିଜସ୍ୱ ଏକ ଅନ୍ତରଙ୍ଗ ରୂପ ।

ଅନୁପସ୍ଥିତ କେବଳ ସେମାନେ
ଖୋଜୁଥିବା, ନିରେଖୁଥିବା
ଦୁଇଟି ନୟନ—
ନିହିତ ଆପଣାପଣ ଯହିଁରେ
ସକଳ ରୂପର,
ଅଗମ—ବିଧାନ ।

ବାତାୟନ
ମୋର ରାଗବନ୍ଧର ସଂସୃତିରୁ
ଦୁଇଟି ନୟନ—
ନିବିଡ଼ର ସଂପୃକ୍ତି
ସ୍ଫଟିକ—ବିମଳ ବାଂଫୀ ସକଳ
ଅଚଞ୍ଚଳ :
ଢଳ
ଗଭୀର—ଗଭୀର—ଗଭୀର !

□□

# ପର ପଥ

ଦୂର ସମୁଦ୍ର ସେପାରେ
ପରଦେଶର ଅଜଣା କେତେ ପଥ ।
ଶୀଳବାନ୍ ତରୁଙ୍କର କିନ୍ତୁ
ଗୁରୁ, ଉଦାର ଛାୟା
ଅତି ପରିଚିତ ।

ଝରି ଆସୁଥିବା ଖରାର ସୁନେଲି କଣା ସାଉଁଟି
ତୃଣ ମୁନରେ ଫୋଡ଼ି, ଗୁଂଥି
ମାଳା ଗଢ଼େଇ ସୁମରି ସେ
ପଚାରି ଦେଲା : ହେଲେ କାହିଁ ?
କେଉଁଠି ସେଇ ମମତାମୟ ବାହୁଯୁଗଳ—
କାହିଁ ?

□□

# ପଲକର କମ୍ପନ

ତମର ପଲକର କମ୍ପନ।
ନିମିଷକର ଚମକମେଲି
ପୁଣି ନିମୀଳନ।
ତୁମର ପଲକର କମ୍ପନ।

ସତେ ବା ଦିଶିଲା ତମକୁ
ଲାଜଲାଜ କେଉଁ କଢ଼ର
ଫୁଟି ଖେଳିବାର ସ୍ୱପ୍ନ।
ତୁମର ପଲକର କମ୍ପନ।

ଇଷ୍ଟ ଅଛି ମୋର : ହେବି ତମର
ସେଇ ସ୍ୱପ୍ନର ଏକ କଣିକା—
ଦିଅ ତ ମତେ ସ୍ୱପ୍ନର ଏକ କିରଣ।
ବାକି ସମୟତକ ପରର
ଖାଲି ସେତିକି ଯାହା ଆପଣାର କ୍ଷଣ—
ଯେତିକି ତମର ପଲକର କମ୍ପନ।

□□

# ଏକ ଉଦାସ ସଂଜ

ଶୂନ୍‌ଶାନ୍ ଗଳି ଗଳି ଉଦାସ।
ଚୌପାଢ଼ିରେ
ହଳଦିଆ ଧ୍‌ମା ଆଲୋକ।
ସ୍ୱୟଂ ମୂର୍ଚ୍ଛା ପରି।
ଥକା ହରା ମଉଳା
ନିଃଶ୍ୱାସ ପ୍ରଶ୍ୱାସ।
ଚିମୁଟାରେ ଧରା
ଆକାଶର ଡାଳିପକାରେ ଯେମିତି
ବିସ୍ମରି ଯାଇଥିବା
ତାରାଙ୍କର ଛୁଅଁ।
ଆପଣାକୁ ଅଣ୍ଡାଳୁଥିବା
ଶଙ୍କିତ, ଦୋଦୋପାଞ୍ଚ, ତୃଷାର୍ତ୍ତ :
ସ୍ମୃତି।

ହଁ,
କେହି ଆସି ନିଂଚୟ ଦୀପ ଜାଳିବ !
ଦପ୍—ଛପ୍ ଲୁଚକ
ଶୂନ୍ୟରେ ଦିନେ ଉକୁଟି ଆସିବ
ଫୁଙ୍ଗୁଳା କଳା ଡାଳରେ ନୀରବ
ଝାପ୍‌ସା ଉଜ୍ଜ୍ୱଳ ପକ୍ଷୀ ଡେଇଁ ଉଡ଼ିବୁଲିବ।

ହଁ,
ନିଃଶ୍ୱାସ ନିଃଶ୍ୱାସରେ ଶୂନ୍ୟ ହୋଇଥିବା
ଅନ୍ତର ବି ଭରି ଭରି ଆସିବ....
କିନ୍ତୁ
ଯାହା ବିତିଗଲା—ଯାହା ରହିଲା ନାହିଁ—
ସେ ପୁଣି
କେମିତି ବାହୁଡ଼ିବ ?

□□

# ଅନୁଭବ–ପରିପକ୍ୱ

ମା,
ମୁଁ ମାନିବି ନାହିଁ–
ଆସନ୍ତା ଦୀପାବଳୀର ମେଳାରୁ
ଗୀତ ଗାଉଥିବା ସେଇ ଟିଣର ନଟୁ
ନେବି ହିଁ ନେବି–
ନା, ମୁଁ ଜାଣିନି ଜମା–
କିଛି ଶୁଣିବି ନାହିଁ।

ମା, କାଲି ବସିବ ଖେଳନା–ମେଳା
ଦୁଇ ପଇସିଆ କାଗଜ ଫିରିଫିରିଟେ
କିଣିଦେବୁ ତ ମତେ ?
ହେଲା,
ମୁଁ ମାଗୁନାହିଁ ନଟୁ
ଖାଲି ଦୁଇପଇସା
ଦେଇଦେବୁ ତୁ ମତେ ?

–ଆଚ୍ଛା, ମା, ମତେ ଖାଲି ମାଟି ଦେଇ ଦେ–
ମୁଁ କିଛି ମାଗିବି ନାହିଁ :
ମେଳା ଯିବାକୁ ଅଳି କରିବି ନାହିଁ
ମାନିଯିବି,
ଯାହା କହିବୁ ତୁଇ।

□□

# ନିଶୂନ ସଂଜଟିଏ

ନିଶୂନ ସଞ୍ଜଟିଏ
ପାଦ ଚିପିଚିପି ଆସିଥିଲା ମୋର କୋଠରୀକୁ ।
କିଛିଟା ସାଙ୍କୁଡ଼ିଗଲା
ମତେ ସେଇଠି ଦେଖି ।

ମୋର ମନରେ ସେତେବେଳେ
ଆସିଥିଲା ଏଇ ଭାବନା :
ଠିକ୍ ଅଛି, ଭଲ ହୋଇଛି,
ସେ ଉଦାସ ହେଲେ ବି
ସତ୍ୟନିଷ୍ଠ...
କିଛି ସମୟ ମୁଁ ରହିବି
ତା'ର ସାବନା ଛାଇରେ,
ବହିବି
ତା'ର ନିଃଶ୍ୱାସର ଲହଡ଼ିରେ
କିଛି ବୋଲି କିଛି କହିବି ନାହିଁ–
ତା'ରି
ତଳିପାର ଲାଲ୍ ଚିହ୍ନ ଦେଖି,
ଚୁପ୍‌ଚାପ ନିରେଖି ରହିଥିବି ।

ସେଇ ସୁନ୍ଦରୀର ପଛେପଛେ କିନ୍ତୁ
ପଶି ଆସିଲେଣି ବିଜୁଳିବତୀ
ବେହିଆ ଗାଡ଼ିମାନଙ୍କର ଧଡ଼ଧଡ଼
ମଣିଷମାନଙ୍କର
ଘାଗଡ଼ା କଣ୍ଠର କଥାବାର୍ତ୍ତା ।
ଥମିଲା ନାହିଁ ସେ,
ଆସିଲା ଯେ ଆସିଗଲା

ହେଲେ ସଙ୍ଗେ ସଙ୍ଗେ ମଉଳିଗଲା ।
ତା'ଆଗରୁ
ସ୍ତିମିତ ଅରୁଣିମା ଉପରେ
ରୁଦ୍ଧି ହୋଇଯିବାର କଳା ଆବରଣଟିଏ ମାଡ଼ିଗଲା ।

—ଭାବିଥିଲି କିଛି କହିବିନି :
କିଛି କହିଲି ନାହିଁ :
ହେଲେ ମୋର ସେଇ ଭାବ, ସେଇ ସଂକଳ୍ପ
ବାସ୍,
ଏତିକିରେ ହିଁ ରହିଗଲା ।

ଏହା ନୁହେଁ ଯେ ତା କହିବାର ନଥିଲା
ଯାହାକି ତାକୁ ଉଦାସ କରିବ
ହେଲେ ସତକଥା କହିବାକୁ ଥିଲା
ଯାହା ଆପଣାର ହିଁ ଆପଣା ନ ରହିବାପାଇଁ
ତଦ୍‌ଗତ ହୋଇ ସହିବାର ଥିଲା ।

ଏହା ତ କେବଳ
ରୁଦ୍ଧି ହୋଇ ଚୁପ୍ ରହିବାର ଥିଲା ।

ଏମିତି କେଜାଣି କେବେ କେଉଁଠି
ସେଇ ସଞ୍ଚି
ଅଦୃଶ୍ୟ ହୋଇଗଲା
ଏବଂ ମୋରି ପାଇଁ ସେ
ଶୂନ୍ୟ ନ ରହିବାର
ରିକ୍ତ ନ ହେବାର
ବନ୍ଧ୍ୟା ଅନୁକମ୍ପା ସମାଜର
କେତେ ଦୁର୍ବହ ହୋଇଗଲା !



# ଏକ ପ୍ରଶ୍ନ

ଯେଉଁ ଆଖିକୁ ତୁମେ ଗଭୀର ବୋଲି କହିଥିଲ
ସେଇ ଆଖି ଭରି ମୁଁ
ରୂପ ତୁମର ପିଇଲି ।
ଯେଉଁ କାୟାକୁ ତୁମେ ରହସ୍ୟ ଭରା ବୋଲି କହୁଥିଲ
ତହିଁର ରୋମ—ରୋମରେ ମୁଁ
ଗୀତ ତୁମର ଗାଇଲି ।

ଯେଉଁ ପ୍ରେମ—ତୁମେ ହିଁ କହିଥିଲ—
ସାରତତ୍ତ୍ୱ ଜୀବନର ବୋଲି,
ସେଇ ଅନାମୟ, ନିର୍ବିକାର, ଚିରସତ୍ତ୍ୱ
ମୁଁ ତୁମକୁ ଦେଲି ।

ଏମିତି
ତୁମଠୁ ପାଇଥିବା ଜ୍ୟୋତିଶିଖାର ଶୁଭ୍ର ବୃତ୍ତରେ
ମୁଁ ଜିଇଁଲି
ପ୍ରତି ମୁହୂର୍ତ୍ତ ଜଳୁଥିବା ମୋର ଜୀବନ :
କିନ୍ତୁ ତୁମେ—
ତୁମେ, ଗୁରୁ, ସଖା, ଦେବତା !—
ତୁମେ କଲ କ'ଣ ?

□□

# ଅଂଧାରୁଆ ଏକୁଟିଆ ଘର ଭିତରେ

ଅନ୍ଧାରୁଆ ଏକୁଟିଆ ଘର ଭିତରେ
ଅନ୍ଧାରୁଆ ଏକୁଟିଆ ରାତି।
ତୁମଠୁ ଲୁଚି–ଛପି
କେଜାଣି କେତେଦିନ ପରେ ଆଜି
ତୁମ ସଙ୍ଗେ ମୋର ଦେଖା
ଏବଂ ଏଇ ନିଛକ ନୀରବତା ଭିତରେ
ରହିରହି ଉଠୁଛି ଅକସ୍ମାତ୍ ଏକ ଯନ୍ତ୍ରଣା
ଏତିକି କହିବାକୁ ଯେ
ଏଇ ନିଛକ ଏକୁଟିଆ ଭାବରେ
ମୋ'ପାଖରେ କିଛି କଥା ନାହିଁ
ତୁମକୁ କହିବାକୁ।

ଆଗରୁ କାହିଁକି ଯେ ମୁଁ
ଏତେଟା ମୂକ ନ ହେଲି ?
ପ୍ରେମର ସୁଧ–ଭୁଲା ମୂହୂର୍ତ୍ତରେ
ମତେ ଏଇ ସୂକ୍ଷ୍ମଜ୍ଞାନ ଛୁଇଁଲା ନାହିଁ କାହିଁକି ଯେ
ହଜାଇ ଦେବାଟା ତ ଦେବା ନୁହେଁ–
ଭୁଲିଯିବା ଗୋଟିଏ କଥା,
ଉତ୍ସର୍ଗ ଆଉ ଗୋଟିଏ :
ଯେ ପର୍ଯ୍ୟନ୍ତ ବାଣୀ ହାରିନି
ଏବଂ ପରାଜୟ ମୁଁ ନିଜ ଭିତରେ

ଗୋଟାପଣେ ସ୍ୱୀକାର କରିନାହିଁ
ନିଜର ଭାବନା, ସମ୍ବେଦନା ବି
ଉତ୍ସର୍ଗ କରିନାହିଁ,
ସେ ପର୍ଯ୍ୟନ୍ତ
ସେ ପ୍ରେମ ବି ସାମାନ୍ୟ ସଂସ୍କାର ମାତ୍ର,
ସଂସ୍କାରୀ ହୋଇନି।
ହାୟ, କେତେ ଝିନ ଆଢୁଆଳରେ
ଝରି ରହିଲେ ଆଲୋକର ସ୍ରୋତ
ଆବୋରି ରହିଲା ମତେ ଅନ୍ଧାର।
ଅନ୍ଧାରୁଆ ଏକୁଟିଆ ଘର ଭିତରେ
ଅନ୍ଧାରୁଆ ଏକୁଟିଆ ରାତି।

□□

# ପକ୍ଷୀ ହିଁ କହିଲା

ମୁଁ କହିଲି "ପକ୍ଷୀ",
ମୁଁ ଦେଖି ରହିଲି—
ପକ୍ଷୀ ପକ୍ଷୀ ହିଁ ରହିଲା।
ଆହୁରି ଆହୁରି ଦେଖିଲି
ଆହୁରି ଆହୁରି କହିଲି
"ପକ୍ଷୀ"
ପକ୍ଷୀ ପକ୍ଷୀ ହିଁ ରହିଲା।

ପୁଣି—କେଜାଣି କେବେ—
ମୁଁ ଦେଖିଲି ନାହିଁ:
ଭୁଲିଗଲି ସେ ମୁହୂର୍ତ୍ତକ ପାଇଁ ନିରେଖିବା
ମୁଁ କହିଲି ନାହିଁ କିଛି—
ହଜିଗଲି ମୁହୂର୍ତ୍ତକ ପାଇଁ
ସ୍ତବ୍ଧ ଚକିତ ପରି ହେଲା ବାଣୀ
ବିଛାଡ଼ି ହୋଇପଡ଼ିଲେ ଶବ୍ଦ,
ଫାଟିଥିବା ଛୁଇଁ ପରି
ଫାଟି ହଜିଯାଆନ୍ତି ଯେମିତି ମଞ୍ଜି
ଅନ୍ନୟନା, ଶବ୍ଦହୀନା ଧରଣୀରେ
ଅଙ୍କୁରିତ ହେବାପାଇଁ ଅଜାଣତରେ।

ତାପରେ—କେଜାଣି କେବେ—
ପକ୍ଷୀ ହିଁ କହିଲା : ''ପକ୍ଷୀ''।
ପକ୍ଷୀ ହିଁ ଦେଖିଲା
ସିଏ ପକ୍ଷୀ ଥିଲା।
ପକ୍ଷୀ
ପକ୍ଷୀ ହୋଇ ରହିଲା ନାହିଁ ସେବେଠୁ :
ମୁଁ ବି ରହିଲି ନାହିଁ ମୁଁ।
କବି ମୁଁ!
କହିବା ସବୁ ଶୁଣିବା
ସ୍ୱର କେବଳ ନୀରବତା।

କେଉଁଠି ଅତି ଗହୀରରେ
ସବୁ ନିୟମ ସ୍ୱୈର,
ସବୁ ସର୍ଜନ କେବଳ
ପଣତ ପ୍ରସାରି ଗ୍ରହଣ କରିବା।

□□

# ଅନ୍ତଃ ସଲିଳା

ବାଲିର ବିସ୍ତାର
ନଦୀ ଯେଉଁଠି ହଜିଗଲା
କ୍ଷୀଣ ଧାର :
ଝରି ପଡ଼ିଲା ମୋର ଅଶ୍ରୁର ଭାର—

ମୋର ଦୁଃଖ-ଧନ
ମୋ ପାଖରେ ଅଗାଧ ପାରାବାର—
ସେ ଅଚାନକ ଶୋଷିନେଲା—
ଯେପରି ଲୁଟି ନିଅନ୍ତି ଲୁଟିଆରା।
ଆଉ ଆଦିଗନ୍ତ
ଲହଡ଼ିଆ ଅଥଚ ଅତୁଟ
ଶୁଖିଲା ବାଲିର ବିସ୍ତାର—
ନଦୀ ଯେଉଁଠି ହଜିଗଲା
କ୍ଷୀଣଧାର ହୋଇ।

ହେଲେ ସେତେବେଳେ
ଯେଉଁଠି ବି ଯିଏ ଖୋଳିଲା
ଆର୍ଦ୍ରତା ପାଇଲା : ଆହୁରି ଖୋଳିଲା—
ରସ-ସଞ୍ଚାର ହେଲା :
ଝରିଝରି ଗାତ ଭରିଗଲା।

ଏପରି ଅଜଣା ପଥିକ
ଯିଏ ବି ଆସିଲା କ୍ଳାନ୍ତ ହୋଇ
ଆଶାୟୀ ହୋଇ ଅଟକିଲା ।

ସ୍ୱଳ୍ପାୟାସରେ ହିଁ ଶାନ୍ତ କରିଗଲା ଏଇଠି
ଆପଣାର ଶୋଷ :
ଦୀର୍ଘ ନିଃଶ୍ୱାସ ନେଇ
ସେପାରି ଚାଲିଗଲା ।

ଆରେ, ଅନ୍ତଃସଲିଳ ଏଇ ବାଲି :
ଅଗଣିତ ପାଦତଳେ ଚକଟି ହୋଇ ଅବିରାମ
ତଥାପି ଆପେ ଆପେ ଶୁଖେଇଦେଇ ଘା
ପଡ଼ି ରହି ସତ୍ତାହୀନ
ଧୂସର–ଧଳା
ନିରୀହ ଆଉ ଉଦାର !

□□

# ନିଃଶ୍ୱାସର ପିତୁଳା

ବାସନାକୁ ବାନ୍ଧିବା ପାଇଁ
ତୁମ୍ଭ ଯେଉଁସ୍ୱର– ତାର ବିଛାଇ ଦିଏ–
ଆହା ! ତାରି ଭିତରେ କେମିତି ଏକାନ୍ତ ନିବିଡ଼
ବାସନା ଥର ଥରେଇ ଯାଏ !

ତେଣୁ ସିନା ସାପର 'କୁଣ୍ଡଳୀ ହଲେ ନାହିଁ
ଫଣା ଦୋହଲୁଥାଏ ।

କେବେ ରାତି ମତେ ଘେରେ
କେବେ ମୁଁ ଦିନକୁ ଡାକେ
କେବେ ପ୍ରଭା ମତେ ଝୁରେ
କେବେ ମୁଁ ବିଛାଡ଼ିଦିଏ
ଆଲୋକର କଣିକା ।

କିପରି ବା ଚିହ୍ନିବି
କେବେ ପ୍ରାଣସ୍ୱର ମୁଖରିତ ହୁଏ
କେବେ ମନ ଅବା କଥା କହେ ?

ନିଃଶ୍ୱାସର ପିତୁଳା ମୁଁ
ଜରା ସହିତ ବନ୍ଧା ହୋଇଛି
ଆଉ ମରଣକୁ ସଅଁପି ଦିଆଯାଇଛି :

ହେଲେ ପ୍ରେମ ଟିକେ ଯାହା ଅଛି,
ତାରି ଦ୍ୱାରା
ଜୀବନ୍ମୁକ୍ତ କରିଦିଆଯାଇଛି ମତେ ।

କାଳର ଦୁର୍ବହ ଗଦାକୁ ତୋଳି ଧରୁଛି
କୌତୁକଭରା ବାଳକ୍ଷଣଟିଏ ।

□□

॥ ୧ ॥

ଏଇ ମହାଶୂନ୍ୟର ଶିବିର
ଅସୀମ, ବ୍ୟାପି ରହିଛି ଉପରେ
ତଳେ ଏଇ ମହାମୌନତାର ନଦୀ
ବହିଯାଏ ଦିଗହରା ।

ଏଇ ମଧ୍ୟ-ଶୂନ୍ୟ, ଅଣ୍ଡାଳୁଛି ମନ
ପ୍ରତୀକମାନଙ୍କର ପରିଭାଷା
ଆତ୍ମାରେ ଯାହା ଆପଣା ଛାଏଁ
ଖୋଲି ଖୋଲି ଯାଏ ।

ରୂପ ଗହଣରେ ସର୍ବଦା ଖେଳେ ଏକ ଅରୂପ
ଗୋଚରରେ ଏକ ଅଗୋଚର, ଅପ୍ରମେୟ
ଅନୁଭବରେ ଏକ ଅତୀନ୍ଦ୍ରିୟ
ପୁରୁଷମାନଙ୍କର ପ୍ରତ୍ୟେକ ବୈଭବରେ ମିଳେ ଅଦୃଶ୍ୟ
ଅପୌରୁଷେୟ ।

ମୁଁ, ଏକ ଶିବିରର ପ୍ରହରୀ,
ପାହାନ୍ତିଆରେ ଉଠି
ନିଜକୁ ମୌନ ନଦୀର କୂଳରେ ଠିଆ ପାଏଁ,
ମୁଁ, ମୌନ-ମୁଖର, ସବୁ ଛନ୍ଦରେ
ସେଇ ଏକ ଅନିର୍ବଚ, ଛନ୍ଦ-ମୁକ୍ତକୁ
ଗାଇ’,ଯାଏଁ ।

॥ ୨ ॥

ବଣରେ ଏକ ଝରଣା ବହିଯାଏ
ଏକ ନର-କୋକିଳ ଗାଏ
ବୃକ୍ଷ ସବୁରେ ଏକ ମର୍ମର
କଢ଼ମାନଙ୍କୁ ଶିହରାଏ
ଏକ ଅଦୃଶ୍ୟ କ୍ରମ ତଳକୁ
ଆହୁରି ତଳକୁ
ଝରାପତ୍ରଙ୍କୁ ସଡ଼ାଏ ।
ଅଙ୍କୁର ଉକୁଟାଏ ।

ମୁଁ ସ୍ରୋତ ସହିତ ବହେଁ,
ପକ୍ଷୀ ସହିତ ଗାଏଁ,
ଗଛ ଆଉ କଢ଼ ସହିତ ଶିହରେଁ,
ଆଉ ସେହି ଅଦୃଶ୍ୟ କ୍ରମରେ
ଭିତରେ ଭିତରେ
ଝରାପତ୍ରଙ୍କ ସହିତ ବିଗଳିତ ହୁଏଁ
ଏବଂ ଜୀର୍ଣ୍ଣ ହେଉଥାଏଁ ।
ନୂତନ ପ୍ରାଣ ପାଏଁ ।

କିନ୍ତୁ ସବୁଠୁ ଅଧିକ ମୁଁ
ବଣର ନୀରବତା ସହିତ ମୌନ ଥାଏଁ–
କାରଣ ସେ ହିଁ ମତେ କହିଦିଏ ମୁଁ କିଏ,
ଯୋଡ଼ିଦିଏ ମତେ ବିରାଟ ସହିତ
ଯିଏ ମୌନ, ଅପରିବର୍ତ୍ତ, ଅପୌରୁଷେୟ
ଯିଏ ସଭିଙ୍କୁ ସମାହିତ କରେ ।

ମୌନର ସୂତ୍ର ହିଁ
କୌଣସି ଅର୍ଥକୁ ନ ଲିଭାଇ
ସବୁଯାକ ଶବ୍ଦକୁ କ୍ରମ କରି
ଜପାମାଳିରେ ଗୁନ୍ଥିଦିଏ ।

।। ୩ ।।

ଶୁଣେ ଗୀତର ସ୍ୱର ।
ଅତିଦ୍ରୁତ, ବାଳ-ଚପଳ, ତାର,
ଏକ ଭବ୍ୟ, ମନ୍ଦ୍ରଗମ୍ଭୀର, ବଳିଷ୍ଠ ତାନର ସ୍ୱର ।

ମୁଁ ଅଛିଁ ବନରେ ।
ସବୁଆଡ଼େ ସଘନ ନୀରବତା ।
ସେତେବେଳେ କ୍ୱଚିତ୍
କେଉଁଠି ମୋ' ଭିତରେ ହିଁ
କେଉଁ ଏକ ସଙ୍ଗୀତ-ବୃନ୍ଦ ଆସିଛି ।
ବନାନୀର ଦିଗ୍‌ଦିଗନ୍ତରୁ ଗୁଞ୍ଜରିତ ହୋଇ ଆସୁଛି
ଆହ୍ୱାନର ସ୍ୱର ।
ଭିତରେ ନିଜର ଶିରା ପ୍ରଶିରାରେ
ଜାଗି ଉଠନ୍ତି
ଆହ୍ଲାଦ ଓ ସମ୍ମାନର ସ୍ୱର ।
ପଛରେ
ଦରବୁଡ଼ା ଅବସାନର ସ୍ୱର ।
ପୁଣି ସବାତଳେ, ପଛରେ, ଭିତରେ, ଉପରେ
ଏକ ସହାସ ଆଲୋକ-ବିନ୍ଧ ଉନ୍ମେଷ
ଚିରନ୍ତନ ପ୍ରାଣର ସ୍ୱର ।

ଶୁଣେ ମୁଁ ଗୀତର ସ୍ୱର
ଅତି ଦ୍ରୁତ, ବାଳ–ଚପଳ, ତାର ;
ଏକ ଭବ୍ୟ, ମନ୍ଦ୍ରଗମ୍ଭୀର, ବଳିଷ୍ଠ ତାନର ସ୍ୱର ।

॥ ୪ ॥

କିରଣ ଏବେ ଝରିଲା ମୋରି ଉପରେ
ମୁଁ କହିଲି :
ମୁଁ ବଜ୍ର କଠୋର–
ପ୍ରସ୍ତର ସନାତନ ।

କିରଣ କହିଲା :
ଭଲା ? ଏଇକଥା !
ମୁଁ ତୁମକୁ ହିଁ ଖୋଜୁଥିଲି
ତୁମ ଦ୍ୱାରା ମନ୍ଦିର ତୋଳିବି
ତୁମ ଅନ୍ତଃକରଣରୁ
ତେଜ–ପ୍ରତିମା ମୁଁ ଜନ୍ମାଇବି ।

ସ୍ତବ୍ଧ ମୁଁ
ମତେ କିରଣ
ଅନୁରାଗରେ ଗେହ୍ଲା କଲା ।

॥ ୫ ॥

ଏକ ଲହୁଣିଆ ନୀରବତା
ଯହିଁରେ ମୁଖର, ଜଳନ୍ତା ବାସନା
ନିଜର ଦାହ ହରାଇ
ଲୀନ ହୁଅନ୍ତି ।

ସେଇଠି ଶବ୍ଦହୀନ
ଛନ୍ଦ ତୋର
ଗୁଞ୍ଜରିତ ହୁଏ :
ଋତ
ବିଜ୍ଞପ୍ତ ହୋଇଯାଏ ।

ଏକ କଳା ଘୋଳ ପରି ରାତି
ଯେଉଁଠି ରୂପ, ପ୍ରତିମା, ମୂର୍ତ୍ତି
ସବୁକିଛି ତରଳି ଯାଆନ୍ତି
ଆଢୁଆଳ ପାଆନ୍ତି
ଏକ ସ୍ୱପ୍ନାତୀତ, ରୂପାତୀତ
ପବିତ୍ର
ଗଭୀର ନିଦରା ।

ତାରି ଭିତରୁ ତୁ
ହାତ ବଢ଼ାଇ
ସହସା ଟାଣି ନେଇ
ପୋଟାଳି ଧରୁ ।

॥ ୬ ॥

ରାତିରେ ଡେଇଁଥିବା
ଅନ୍ଧାରର ପରଦା ପଛରେ
ମତେ ଲାଗିଲା
ଅଚାନକ ମୁଁ ଶୁଣିପାରିଲି
ନୀରବତାର ଫିସ୍‌ଫିସ୍
ଧିମା, ରହସ୍ୟମୟ, ମଧୁର
ପରମ ଗୀତିମୟ ।

ଏବଂ ସେଇ ଗୀତ ମତେ କହିଲା, ଦୁର୍ନିବାର,
ଆରେ,
ଏ ପର୍ଯ୍ୟନ୍ତ ଉଠିଲ ନାହିଁ ତୁମେ
ଏବଂ ଏହି ମୁକ୍ତ ସ୍ରୋତ ପରି
ସବୁଆଡ଼େ ବହିଗଲା ଆଲୋକର ଧାରା
ଆରେ, ଅଭାଗା—
କେତେଥର ଭରିଗଲା, ଅଦେଖା,
ଛଳଛଳ ଉଛୁଳି ବହିଗଲା
ତୁମର ପିଆଲା ?

ଉଠିପଡ଼ି ଖୋଲିଦେଲି ମୁଁ ଝରକା
ଚମକି ପଡ଼ିଲି ଆଉଥରେ :
ନୀରବତା ନୁହେଁ ତାହା—
ଝରକା ବାହାରେ
ଗାଉଥିଲେ ଈଶ୍ୱର ।

ୟାରି ଭିତରେ ପୁଣି
ଆସିଗଲା ଉଷାର ବନ୍ୟା ।

॥ ୭ ॥

ପବନ କେଉଁଠୁ ଉଠିଲା ବହିଲା, ଆଉ
ଉପରୁ ଉପର ଚାଲିଗଲା
ପଥ ଶୋଇ ରହିଲା :
କୂଳର ଅତଡ଼ା ଚମକିଲା ନାହିଁ
ନା କମ୍ପିଲା ଡାଳ
ନା ହଲିଲା ପତ୍ର ।

ଅଙ୍ଗଲାଗି ଟିକି ଶିଶିର ବିନ୍ଦୁଟିଏ ବି
ପଡ଼ିଲା ନାହିଁ ଝରି ।

ବନାନୀରେ ସିଧା ଠିଆ,
ହେଲେ, ଆପଣାର ଉଚ୍ଚତାରେ ହଜିଲା—ହଜିଲା
ପାଇନ୍ ବୃକ୍ଷ ସବୁ
ଚେଇଁ ଉଠି ଶିହରିଗଲେ
ସନନ୍ ସନ୍ ହେଲେ ।
ଏକ—ସ୍ୱର ହୋଇ ସେଇ ଅଜଣା ନାମକୁ
ପବନ ସହିତ
ଗାଇଲେ ।

ଉପରେ ଉପରେ
ଯାହା ପବନ ଗାଇଲା
ଦେବଦାରୁ ପାଳିଆ ଧରିଲା ତାକୁ
ଯାହା ହିମ ଶିଖରରେ ଝଲସିଲା
ଯାହା ସଞ୍ଜ ଆକାଶରୁ ଉଚ୍ଛୁଳିଲା—
ତାହା କିଏ ପାଇଲା,
ଯିଏ ଆୟତ୍ତ କରିବା ପାଇଁ
ଆକାଂକ୍ଷାର ହାତ ବଢ଼ାଇଲା ?

ଆହା !
ତାହା ତ ମୋର
ଦିଆ ସରିଥିବା ହୃଦୟରେ ଉତୁରିଲା,
ମୁଁ ସ୍ୱୀକାର କରିଥିବା ଅଶ୍ରୁରେ ଉଚ୍ଛୁଳିଲା :
ସେଇ ଅଜଣା-ଅଚିହ୍ନା ହିଁ ଆସିଲା ।

ସେ ଏ ସଭିଙ୍କର—ଏବଂ ମୋର—ମାଧ୍ୟମରେ
ନିଜକୁ ନିଜ ଭିତରକୁ ଆଣିଲା,
ନିଜ ଭିତରେ ସମାହିତ ହେଲା ।

॥ ୮ ॥

ଯେତିକି ସ୍ଥିତି ଇୟତ୍ତା ମୋର ଝଲକାଏ
ସେତିକି ହିଁ ମୁଁ ପ୍ରେତ ।
ଯେତିକି ରୂପାକାର—ସାରମୟ ଦେଖାଯାଉଛି
ସେତିକି ମୁଁ ବାଲି ।

ଭାଙ୍ଗି ଭାଙ୍ଗି ଯେତେ ତୋର ପ୍ରତିଭା
ମୋର ଅଜଣା-ଅଚିହ୍ନା
ନିଜ ମନଇଚ୍ଛା
ଅଙ୍କୁର ଉପୁଜାଏ
ବାସ୍, ସେତିକି ହିଁ ମୁଁ ଖେତ ।

॥ ୯ ॥

ଯିଏ ବହୁତ ଘାରି-ଘାରି
ମେଘରୁ ବର୍ଷିଲା
ଆମକୁ ଆନନ୍ଦ ଦେଇ
ମାଟିରେ ମିଳେଇଗଲା ।

ଆହା ! ଯିଏ ଆମକୁ ସରସାଏ
ତାହା ତ ଲୁଚିଥିବା ପାଣି

ଆମର ଏଇ ଜଣା-ଚିହ୍ନା
ମାଟିତଳର।
ମିଳେଇଯାଏ ନା,
ସରିଯାଏ ନାହିଁ।

।। ୧୦ ।।

କୁହୁଡ଼ିରେ ଢଙ୍କା
କେତେ ଗଭୀର ତୁମର ପୋଖରୀ
କେତେ ଲଘୁ ଆମର ଅଞ୍ଜଳି।

କୁହୁଡ଼ିରେ ଏଠି ସେଠି ଲହରାଉଥିବା
କିଛି ଛାଇ
ଦିଶିଯାଏ କେବେ କେମିତି,
ଉତ୍କଣ୍ଠାର ଆଞ୍ଜୁଳା ସେଇ ଦ୍ରବଣ ଭରି
ଓଠଯାଏ ଆଣେ,
ଜଳନ୍ତା ବିଜୁଳି-ରେଖା ପରି
କଣ୍ଠ ଚିରି ଛାତିଯାଏ ଟାଣି ହୋଇଯାଏ।
ପୁଣି ଆହୁରି ଶୋଷ ଜଗାଏ,
ପୁଣି ଦୃଷ୍ଟି
କୁହୁଡ଼ିରେ ଫାଙ୍କ ଉଣ୍ଡି
ମିଟିମିଟି ଅନାଏ।
ଆତୁରତା ଆମକୁ ଭୁଲାଇଦିଏ,
କେତେ ଲଘୁ ଆମର ଅଞ୍ଜଳି—
କେତେ ଗଭୀର ଏହି କୁହୁଡ଼ି-ଢଙ୍କା
ପୋଖରୀ ତୁମରି।

ପୁଣି ଭରି ଉଠେ ଆଞ୍ଜୁଳା
ଲହରୀ ବୃତ୍ତ ପ୍ରସରି ହୋଇଯାଏ ଉଭାନ୍,
ଏହିପରି ଯୁଗ-କଳ୍ପ ଶିଳାୟିତ କରିଗଲେ
ଆମର ମୁହୂର୍ତ୍ତସବୁ,
କୁହୁଡ଼ି-ଢଙ୍କା ପୋଖରୀକୁ ଆବୋରି ନିଏ ।
ଗିରି ଗହ୍ୱର ବି ଅବିରଳ ।
ଦିନେ କିନ୍ତୁ ଖୋଲିଯିବ
ସ୍ଫଟିକ-ମୁକୁର ପରି ନିର୍ମଳ ପୋଖରୀ ତଳ
ଆଶାର ଆଗ୍ରହ ଆମକୁ କରିଛି ବିକଳ ।

କୁହୁଡ଼ି ଢଙ୍କା
କେତେ ଗଭୀର ପୋଖରୀ ତୁମର
କେତେ ଲଘୁ ଅଞ୍ଜଳି ଆମର ।

କିନ୍ତୁ ଏଇ କୁହୁଡ଼ି ନୁହେଁ କି ସଦାବର୍ତ୍ତ
ଯହିଁରେ ନୀରନ୍ଧ୍ର ତୁମର କରୁଣା
ବାଣ୍ଟି ହେଉଥାଏ ଦିନ ରାତି ?
କେବେ ଉଙ୍କି ମାରୁଥିବା ଛାୟା ହିଁ
ଅନ୍ତିମ ଭାଷା-ସମ୍ଭବ-ନାମ ?
କରୁଣା-ଧାମ !
ବୀଜ-ମନ୍ତ୍ର ଏଇ, ସାର-ସୂତ୍ର ଏଇ,
ଗଭୀରତାର ଏହାହିଁ ଏକ ପରିମାଣ
ଆମର ଏତିକି ପ୍ରଣାମ !

କୁହୁଡ଼ି ଢଙ୍କା
କେତେ ଗଭୀର ପୋଖରୀ ତୁମରି
ଲଘୁ ଆମର ଅଞ୍ଜଳି ।

॥ ୧୧ ॥

ତୁ କହିବୁ ନାହିଁ ?
ତେବେ ବି ଶୁଣିନେବି ମୁଁ ।
ସକାଳର ପହିଲି କିରଣ
ଭୋଳାପଣରେ ବିତାଇଦେବ,
ଅଜଣାଭାବେ ଶିଶୁ ପରି
ଝରଣା ତାକୁ ଦୋହରାଇବ,
ଓଦା ହଳଦିଆ ବାଲି ଉପରେ
ଗେଣ୍ଡା ଧୀରେ ଧୀରେ ଆଙ୍କିବ,
ପତ୍ରଙ୍କ ମର୍ମର
କାନକୁହା ଫିସ୍‌ଫିସ୍ ପରି ଏଠି ସେଠି ପ୍ରସାରି ଦେବ
ପକ୍ଷୀର ତୀକ୍ଷ୍ଣ କୂଜନ
ଶଲ୍ୟ ପରି ଆକାଶରେ ଝୁଲାଇବ,
ଦିନ ପୁଣି ସହସା ଖୋଲିଯାଇ
ସଭିଙ୍କଠି ତାକୁ ପ୍ରକଟ କରିବ,
ନିର୍ମମ ଆଲୋକରେ
ସବୁକିଛି ଉପରେ ସମାହିତ କରି
ସବୁକିଛି ଲେଖିଯିବ ।
ମୁଁ ଶୁଣିନେବି ।
ତୁ କହିବୁ ନାହିଁ ?
ଆସ୍ଥା ଅଛି,
ଆନମନା ହେବିନି ସେତେବେଳେ—
ଶୁଣିନେବି ।

॥ ୧୨ ॥

ଆରେ ହେ ଆତ୍ମା ରେ
ଝିଅ ତୁ ଓଲି କୁଆଁରୀ
ମହାଶୂନ୍ୟ ସହିତ
ଯୋଡ଼ା ହେଉଛି ତୋର ସପ୍ତପଦୀ ।

ଆଜିଠୁ ତୋର ହାତ ସେ ହିଁ ଧରିପାରିବ—
ସଂଭ୍ରମ—ଅବଗୁଣ୍ଠିତ ଅଙ୍ଗକୁ
ତାହାର ହିଁ ମୃଦୁତର କୌତୂହଳ
ଆଲୋକର କିରଣ ଛୁଆଁଇବ ।
ତୋ'ସହିତ ନିଭୃତରେ ରହସ୍ୟର କଥା
ସେ ହିଁ ଏକା କହି ପାରିବ ।
ତୁ ଯେତିକି, ଯେମିତି ବୁଝିବୁ
ସିଏ ଯେତିକି ଯେମିତି ବୁଝାଇବ ।

ପ୍ରାପ୍ୟ ତୋର ତାହା
ବରଦ ହାତ ତାହାର
ତୋ' ଉପରେ ଯାହା ଅଜାଡ଼ିଦେବ ।
ଉଦ୍ଦେଶ୍ୟ, ଯାହା ତାକୁ ଭଲ ଲାଗିବ ;
ଲକ୍ଷ୍ୟ ତାହା, ଯେଉଁଆଡ଼େ ମୋଡ଼ିଦେବ ସିଏ ।
ପଥ ତୋର ଅଙ୍କେଇ ବଙ୍କେଇ
ତା'ରି ପାଖକୁ ହିଁ ସିଧା ପହଞ୍ଚିବ ।
ତୁ ନିଜର ବି ଯେତିକି ହେବୁ ।

ଯେତିକି ସେ ଆପଣେଇ ନେବ
ରେ ଆତ୍ମା
ତୋର ବରଣ ହେଲା,
ମହାଶୂନ୍ୟ ସହିତ
ସପ୍ତପଦୀ ତୋର ରଚିତ ହେଲା।

ହଁ, ରହିଗଲା ପଛରେ ଏଇ ଘର, ଉପବନ
ପରିଚିତ-ପରିଜନ, ମୁଁ ବି, ଆତ୍ମୀୟ ସମସ୍ତେ,
ଶୋଚନା କରନା କିନ୍ତୁ
ଆମେ ଥିଲୁ ଏ ପର୍ଯ୍ୟନ୍ତ ଆପଣାର–
ଆମକୁ ଗଢ଼ାହୋଇଥିଲା ଠିକ୍ ଅଧା ଅଧା
ଅଧା ସ୍ୱପ୍ନ–
ଆଖିରେ ଲୁହ ଭରି ମୁହଁ ବୁଲାଇ ନେ,
ଆଉ ଭରା ଅଞ୍ଜଳିରୁ ପଛାଡ଼ିଆ ବିଞ୍ଚିଦେ
ସବୁତକ ଫୁଲ :
ସ୍ମରଣର, ଶ୍ରଦ୍ଧାର, କୃତଜ୍ଞତାର, ସଦିଚ୍ଛାର–
ଆମେ ପଚାରୁନାହୁଁ,
ଯାହା ହେବୁ ତୁ ହ,
ପରିତାପ ହେବୁନି କେବେହେଁ।

ଯା, ଆତ୍ମା, ଯା
କନ୍ୟା–ବଧୂ–
ତାହାରି ଅନୁଗାମିନୀ
ସେଇ ମହାଶୂନ୍ୟ ହିଁ ଏବେ ତୋର ପଥ
ଲକ୍ଷ୍ୟ, ଅନ୍ନ-ଜଳ, ପାଳକ, ପତି,
ଆଲୋକ, ଧର୍ମ :
ସେ ହିଁ ଏକମାତ୍ର ତୋତେ ସରସାଇବ।

ରେ ଆତ୍ମା
ତୋର ବରଣ ହେଲା,
ରେ ସମ୍ପୃକ୍ତା,
ରେ ପରିଣୀତା :
ମହାଶୂନ୍ୟ ସହିତ
ସପ୍ତପଦୀ ତୋର ରଚିତ ହେଲା ।

॥ ୧୩ ॥

ଏକକିନୀ ଆଉ ଏକାକିନୀ ।
ପ୍ରିୟତମ ଧୀର, ସମୁଦ୍ର ସର୍ବଂସହା
ଚଞ୍ଚଳା ସଙ୍ଗିନୀ ।

ଏକାକୀ :
ସେଇ ତେଜମୟ ଅଛି ଯେଉଁଠି
ଦୃଷ୍ଟି ଆପେ ଆପେ ନଇଁଯାଏ ;
ବାଣୀ ତ ବାଣୀ, ମୌନତାର ଗୁଞ୍ଜନ ବି
ସେଇଠି ଶେଷ ହୋଇଯାଏ ।
ଶୀତଳତା ତାର ଏକ ଛୁଆଁଣ ମାତ୍ରେ ହିଁ
ସାରା ରୋମାଞ୍ଚ ଶିଳାୟିତ କରିଦିଏ,
ମନର ଦ୍ରୁତ ରଥର ଅବିଶ୍ରାନ୍ତ ଗତି
ପରିକ୍ରାନ୍ତ କରିପାରେନା କେବେହେଲେ
ତା'ର ପାଦନଖ ସୁଦ୍ଧା ।
ସେ
ଏଇଥିପାଇଁ
ଏକାକୀ ।

ଏକାକିନୀ :
ଯାହା କହିବାର ଅଛି
ତାହା ଭାଷା ମାଗେନା ।
ଏଇଥିପାଇଁ
କାହାରିକି ସାକ୍ଷୀ ମାଗେନା
ଯାହା ଶୁଣିବାର ଅଛି, ତାହା ଯେଉଁଠି ଝରିବ
ତେଜ-ଭସ୍ମ କରି ପକାଇବ—
ତେବେ କିପରି କେହି ତାକୁ
ଅଙ୍ଗେ ନିଭାଇବା ପାଇଁ
ମନ ବଳେଇବ ?
ସିଏ
ଏଇଥିପାଇଁ
ନିରସ୍ତ୍ର, ନିର୍ବସନ, ନିଃସାଧନ, ନିରୀହ
ଏଇଥିପାଇଁ
ଏକାକିନୀ ।

॥ ୧୪ ॥

ଧୀରେ ଧୀରେ ସେ ଆସିଲା
ଅଭ୍ୟସ୍ତ ପାହୁଣ୍ଡ ପକାଇ ଚାଲିଗଲା ।

କେହି ତାକୁ ଛୁଇଁଲେ ନାହିଁ
ସେଇ 'ଅସଙ୍ଗ'କୁ ଅଟକାଇବାପାଇଁ
କୌଣସି ବି ହାତ ଉଠିଲା ନାହିଁ ।

ପର ଆଖି ଦେଖି ରହିଲେ ସବୁକିଛି
ସବୁକିଛିକୁ ବାତ୍ସଲ୍ୟଭାବରେ
ସାଉଁଳେଇ ଆଶିଷ ଦେଇ–
ହେଲେ ଏପରି ଯେ
ସବୁକିଛି ଅସିଆଣା–
ଶିଶୁପରି ଅବୋଧ–
ଦୃଷ୍ଟି ତା'ର ଅଟକିଲା ନାହିଁ
ଯେପରି ଚାଲିଯାଏ ତୃଣ-ତରୁକୁ ଛୁଇଁ ସକାଳର ଖରା
ଦୃଷ୍ଟି ବି ଚାଲିଗଲା ଆଗକୁ ଆଗକୁ।
ଆଗରେ, ଦୂର, ସେପାରି, ଆଗରେ
ଯେଉଁଠି ଆହୁରି ଏକ 'ଅସଙ୍ଗ' ବସିଛି
ଯାହାର ଦୃଷ୍ଟି ଦେଖୁଛି ସବୁକିଛି
ସବୁକିଛିକୁ ସାଉଁଳେଇ, ଗେହ୍ଲା କରି, ଆଦର କରି
ତାହାକୁ ବି, ଶିଶୁପରି ଅବୋଧକୁ ଯେପରି
ଅଟକେ ନାହିଁ କିନ୍ତୁ ଦୃଷ୍ଟି,
ଚାଲିଯାଏ ଆଗକୁ ଆଗକୁ।

ଆଗକୁ ?
ହଁ, ଆଗକୁ, ହେଲେ
ତା'ଠୁଁ ଆଗରେ ସବୁ ବିସ୍ତାର
ଘୂରି ଘୂରି ବୁଲନ୍ତି ଚକ୍ରାକାର,
ତା'ପର୍ଯ୍ୟନ୍ତ ଫେରି
ସମାହିତ ହୋଇଯାଆନ୍ତି।

।। ୧୫ ।।

ଯାହାକିଛି ଥିଲା ସୁନ୍ଦର, ଶ୍ରେୟ, କାମ୍ୟ
ଯାହା ଭଲ, ସଜ-ନୂଆ ଥିଲା, ସତ୍ୟ-ସାର,
ସବୁ ବାଛି ବାଛି ମୁଁ ଆଣିଲି ।
ନୈବେଦ୍ୟ ବଢ଼େଇଲି ।

କିନ୍ତୁ ଇଏ କ'ଣ ହେଲା ?
ସବୁ ପଡ଼ି ପଡ଼ି ମଉଳିଲା,
ଶୁଖିଗଲା, ମୁରୁଝାଇଗଲା :
କିଛି ବି ତ ହାତ ବଢ଼େଇ
ନେଲା ନାହିଁ ସିଏ ।

ଗୋପନ ଲଜ୍ଜାରେ ତଙ୍କା
କ୍ଷୀଣ ସ୍ୱର ଭିତରୁ ଆସିଲା :
ଏଇ ସବୁ ମନ ହିଁ କଲା,
ହୃଦୟ କିଛି ଦେଲା ନାହିଁ,
ପରମ୍ପରାରୁ ନୁହେଁ, ନିଜ ପାଇଁ ବଞ୍ଚିଲା ।
ଏଇଥିପାଇଁ ଆତ୍ମା କିଛି ଛୁଇଁଲା ନାହିଁ ।

କେବଳ ଯାହା ଅସ୍ପୃଶ୍ୟ ଗର୍ହିତ କହି
ଛାଡ଼ି ଆସିଛି ମୋର ଅସ୍ତିତ୍ୱର ସତ୍ତା
ଯାହାର ଭୟରେ ତ୍ରସ୍ତ,
କଳା ଘୃଣା ତାଙ୍କି ହୋଇଛି ଇୟତ୍ତା,
ସେତିକି ହଳାହଳ ହିଁ ସେ ନେଲା ।

ଏବଂ ମତେ ବାତ୍ସଲ୍ୟଭରା ଆଶିଷ ଦେଇ
ଆଣ୍ଠୁଳାଏ ପିଇଲା ।

॥ ୧୬ ॥

ମୁଁ କବି
ଦ୍ରଷ୍ଟା, ଉନ୍ମେଷ୍ଟା,
ସନ୍ଧାତା,
ଅର୍ଥବହ,
କୃତବ୍ୟୟ ମୁଁ ।
ମୁଁ ସତ୍ୟ ଲେଖେଁ :
ଲେଖିଲେଖି ସବୁକୁ
ମିଛକରି ଚାଲେଁ ।

ତୁ କାବ୍ୟ
ସଦା-ବେଷ୍ଟିତ ଯଥାର୍ଥ
ଚିରତନିତ,
ଭାରହୀନ, ଗୁରୁ,
ଅବ୍ୟୟ ।

ତୁ ଛଳ କରୁ
କିନ୍ତୁ ପ୍ରତ୍ୟେକ ଛଳରେ
ତ ଆହୁରି ବିଶଦ, ଅଭ୍ରାନ୍ତ,
ଅନନ୍ୟ ହୋଇଯାଉ ।

॥ ୧୭ ॥

ନା କୌଣସିଠୁ ନିର୍ଗତହେଲା ଏଇ ବୃତ୍ତ
ଯାହା ପୁଣି
ଶୂନ୍ୟରେ ଯାଇ ବିଲୀନ ହେବ :
କିନ୍ତୁ ସେ ଯେଉଁ ଶୂନ୍ୟକୁ ବାନ୍ଧିରଖିଛି—
ତହିଁରେ ଅଛି
ଏକ ରୂପାତୀତ ଶୀତଳ ଜ୍ୟୋତି ।

ତେବେ ପୁଣି ଶୂନ୍ୟ କିପରି ଅଛି—
କେଉଁଠି ଅଛି ?
ମତେ ପୁଣି ଡର କାହାକୁ ?
ଶୂନ୍ୟକୁ ଭଜି ଚାଲିଥିଲେ ବି ମୁଁ
ପରାଜୟକୁ ବର୍ଜନ କରେ ।
ଚେତନା ମୋର ଅଜାଣତରେ
ପ୍ରଭା ଭିତରେ ନିମଜ୍ଜିତ ହୁଏ :
ମୁଁ ସ୍ୱୟଂ
ସେଇ ଜ୍ୟୋତିରେ ଅଭିଷିକ୍ତ
ସଜ୍ଜିତ ହୁଏ ।

॥ ୧୮ ॥

ଅନ୍ଧକାର ଭିତରକୁ ଚାଲିଯାଇଛି
କଳାରେଖା
ଦୂର ଦୂରାନ୍ତର ପର୍ଯ୍ୟନ୍ତ ।

ସେଇ ସିଆର-ରେଖା ଧରି ମୁଁ
ବଢ଼ି ଆସିଛି, ଚାଲିଆସିଛି
ବାରଂବାର ଦୁଆର ଯାଏଁ :

ଥମିଯାଇଛି ସେଠି :
ସନ୍ଧାନ ଦେଇ ପାରିବ ଏହା
ମରଣ ଯାଏ ।

ଚାଲି ରହିଥିବାପାଇଁ ଏଇ ପ୍ରତିଜ୍ଞା
ପହଞ୍ଚ୍ ପାରିବି ମୁଁ
ଆଲୋକର ପାରାବାର ଯାଏ ।

କାହିଁକି ଚାଲିବା
ଯଦି ପଥ କେବଳ
ମୋର ଅନ୍ଧକାର ଠାରୁ
ସଭିଙ୍କର ଅନ୍ଧକାର ଯାଏଁ ?
ସତେ କ'ଣ ତାକୁ ଲଂଘିଲେ ହିଁ
ପହଞ୍ଚିହେବ
ସବୁକିଛି ଧାରଣ କରୁଥିବା ପାରମିତା କରୁଣା ଯାଏଁ
ନୈର୍ବ୍ୟେକ୍ତିକ ପ୍ରେମ ଯାଏଁ ?

॥ ୧୯ ॥

ସେଇ ତ୍ରିପଣ୍ଡ କଳା ଶିଳାଖଣ୍ଡ ଉପରେ
ବସିଥିବା ଦତ୍ତ-ଚିତ୍ତ,
ସେଇ କାକ
ଚଞ୍ଚୁରେ ଲେଖି ଯାଉଥାଏ ଅବିଶ୍ରାନ୍ତ

ପ୍ରତି ମୁହୂର୍ତ୍ତ, ଦିନ-ଯୁଗ,
ଭୟ-ତ୍ରାସ, ବ୍ୟାଧି-ଜ୍ୱର, ଜରା-ମୃତ୍ୟୁ
ଗଢ଼ା-ଭଂଗା ହେବାର କଷ୍ଟ,
ମିଳନ-ବିରହ,
ଗତି-ନିର୍ଗତ-ବିଳୟର
ଅନ୍ତବିହୀନ ଚକ୍ରାନ୍ତ ।

ଏଇ ଧବଳ ଶିଳା ଉପରେ ଏଇ ଆଲୋକ-ସ୍ନାତ
ଉଜ୍ଜ୍ୱଳ ଈଶ୍ୱର-ଯୋଗୀ,
ଅକ୍ଲାନ୍ତ-ଶାନ୍ତ
ଆପଣାର ସ୍ଥିର, ଧୀର ମନ୍ଦ ସ୍ମିତିରେ
ସକଳ ଲିଖନ
ଲିଭାଇ ଲିଭାଇ ଯାଏ ।

ଯୋଗୀ !
ସେଇ ସ୍ମିତି ମୋ'ଭିତରେ ଲେଖିଦେ :
ଲିଭିଯାଉ ସବୁ, ଯାହା ଲିଭିଯାଏ ।
ତାହାହିଁ ଶୁଭଙ୍କର ହେବ ।

॥ ୨୦ ॥

ବାଲିବନ୍ତ ଆଡୁଆଳରେ ବସିଥିବା
ବୁଢ଼ାକୁ ମୁଁ କହିଲି :
ମୋତି ଲୋଡ଼ା ମୋର ।

ସେ ସଙ୍କେତ ଦେଲା ।
ପାଣିକି ଡେଇଁପଡ଼ !

ମୁଁ କହିଲି :
ମୋତି ମିଳିବଇ, ୟାର କ'ଣ ଭରସା !
ମୁଠାଏ ବାଲି ସାଉଁଟି ମୋ'ଆଡ଼କୁ ବଢ଼ାଇଦେଲା ସେ ।
ମୁଁ କହିଲି :
ୟାରି ଭିତରେ ମୋତି ମିଳିବ ମତେ ?
ସେ ଏକ ଗୋଡ଼ି ଉଠାଇଲା ଏବଂ
ଆନମନା ହୋଇ ମୋ'ଆଡ଼େ ଫିଙ୍ଗିଲା ।

ଅତି ଯତ୍ନରେ ମୁଁ ତାହା ଧରିଲି
ଆଉ କହିଲି : ଏହା କ'ଣ ମୋତି—
ଆପଣଙ୍କର ?

ଧୀରେ ଧୀରେ ଟେକିହେଲା ନଇଁଯାଇଥିବା ମଥା
ମୋ'ଆଡ଼କୁ ମୁହଁ କଲା ସେ ।
ସମୁଦ୍ର ପରି ଥିଲା ତା'ର ଆଖି,
ବହୁ ଶତାବ୍ଦୀର ବାଲିସ୍ତରରେ
ଇତିହାସର ପବନ-ଲେଖା ପରି
ଆଖିକୋଣର କୁଂଚ ତାର ।
କହିଲା ସେ :
(କୌଣସି ଏକ ହଜିଲା ପବନ
ସେଇ ବାଲି—ସ୍ତୂପରୁ, ଘାସରୁ
ସର୍ପିଳ ଭଙ୍ଗୀରେ ପିଚ୍ଛିଳି ଗଲା)
ହଁ :
ବା ନାହିଁ କାହିଁକି ?
ମାଟି ଭିତରେ
ପଥର ଥିଲା
ପଥର ଭିତରେ

ପାଣି ଥିଲା
ପାଣି ଭିତରେ
ବେଙ୍ଗ ଥିଲା
ବେଙ୍ଗ ଭିତରେ—

ଅସ୍ଥି ଥିଲା ଅର୍ଥାତ୍ ମାଟି ପଥର ଥିଲା,
ଲହୁଧାର ଥିଲା ଅର୍ଥାତ୍ ପାଣି ଥିଲା,
ଶ୍ୱାସ ଥିଲା ଅର୍ଥାତ୍ ପବନ ଥିଲା,
ଜୀବ ଥିଲା—ଅର୍ଥାତ୍ ବେଙ୍ଗ ଥିଲା ।

ଯେଉଁ ମୋତି ଲୋଡୁଛ
ତାର ପରିଚୟ ଯଦି ଏଇୟା ନୁହେଁ
ଆଉ କ'ଣ ତା ହେଲେ ?

।। ୨୧ ।।

ଏହା ହିଁ, ହଁ, ଏହା ହିଁ—
ଆଉ କେହି ଉବୁରି ରହି ନାହିଁ
ସେଇ ମୋର ମଧୁ-ମଦ-ଭରା
ରାତିର ସଙ୍କେତ :
ଏଇ ଏକ ପଡ଼ି ରହିଥିବା ଖପୁରି ପିଆଲା
କହୁଛି ଯାହା—
ଚାହଁ ଯଦି ମାନିନିଅ କାହାଣୀ ।

ଆଉ ଦେଇପାରନ୍ତି କ'ଣ ବା
ପ୍ରମାଣ ସେଇ ରାତିର :
ବା ପ୍ରମାଣ ନିଜ କଥାର ?

ସେଇ ଧୂମ ମୁକ୍ତ, କମ୍ପହୀନ
ଆପଣାର ହିଁ ଜ୍ୱଳନର ହୁତାଶନର
ତାପ-ଶୁଭ୍ର କେନ୍ଦ୍ର-ବୃତ୍ତରେ
ସେଇ ଯୁଗ-ସାକ୍ଷାତ୍‌ର ?

ଏପରି କେଉଁଠି ତ ଥିଲା ଲେଖା :
କିନ୍ତୁ ଯାହା ମୁଁ ଦେଲି, ଯାହା ପାଇଲି
ଯାହା ପିଇଲି, ଯାହା ପକାଇଥିଲି,
ଯାହା ଢାଳିଲି, ଯାହା ଉଛୁଳାଇ ଦେଲି
ଯାହା ସିଝାଇଲି, ଯାହା ଛାଣିଲି
ଯାହା ଉତାରିଲି, ଯାହା ଚଢ଼ାଇଲି
ଯାହା ଯୋଡ଼ିଲି, ଯାହା ଭାଙ୍ଗିଲି, ଯାହା ଛାଡ଼ିଲି—
ସବୁର ଯାହାକିଛି ହିସାବ ରହିଲା,
ମୁଁ ଦେଖିଲି
ସେଇ ଯଜ୍ଞଜ୍ୱାଳାରେ ଖସିପଡ଼ିଲା ।

ଆଉ ସେଇ କ୍ଷଣି ମତେ ଲାଗିଲା—
ଆରେ, ମୁଁ ନିସ୍ତାର ପାଇଗଲି—
ଠିକ୍ ଅଛି, ମଥା ମୋର ଘୂରିଗଲା ।

ମୁଁ ଅବାକ୍, ଅପଲକ
ମୋ'ପାଖରେ କିଛି ନାହିଁ ଆଉ
ତୁମେ ବି ଯଦି ଚାହଁ ତ
ଆଡ଼େଇ ଦିଅ
ଜାଣେ ମୁଁ ବି ତ ଭଙ୍ଗା ଖପୁରୀର ଫାଳେ
ଏବଂ ମତେ କହିବାର କ'ଣ ଅଛି
ଯେହେତୁ ମୁଁ ସତ ନିଜ ପାଇଁ ?

॥ ୨୨ ॥

ହେ ମୂର୍ତ୍ତି !
ବାସନାର ବିଲୟ
ଅଦମ୍ୟ ଆକାଂକ୍ଷାର ବିଶ୍ରାମ ।
ବସ୍ତୁ ଜଗତ୍‌ର ବନ୍ଧନରୁ ମୁକ୍ତିର
ହେ ଶିଳାଭୂତ ସଙ୍କେତ,
ହେ ଆତ୍ମ-ସାକ୍ଷ୍ୟର ମୁକୁର,
ପ୍ରତୀକମାନଙ୍କର ନିହିତାର୍ଥ !
ସତ୍ତା-କରୁଣା, ଯୁଗନଦ୍ଧ !
ହେ ମନ୍ତ୍ରର ଶକ୍ତି-ସ୍ରୋତ
ସାଧନା ଫଳର ଉତ୍ସର୍ଗ
ହେ ଉଦ୍‌ଗତିର ଆୟତନ୍
ହେ ଛାୟାହୀନ, ଅରୂପ
ଅପ୍ରତିମ ପ୍ରତିମା
ହେ ନିଃଶ୍ରେୟସ୍
ସ୍ୱୟଂସିଦ୍ଧ !

॥ ୨୩ ॥

ବ୍ୟଥା ସଭିଙ୍କର
ନିବିଡ଼ତମ ଏକାନ୍ତ
ମୋର ।

କଳୁଷ ସଭିଙ୍କର
ସ୍ୱେଚ୍ଛାରେ ଆହୃତ ;
ସଦ୍ୟଧୌତ ଅନ୍ତଃପୂତ
ବଳି ମୋର ।

ଧ୍ୱାନ୍ତ ଏଇ ଅସମାହିତ ସଂସ୍କୃତିର
ସକଳ ଦୌର୍ବଲ୍ୟର
ଶକ୍ତି ତୋର ତୀକ୍ଷ୍ଣତମ, ନିର୍ମମ, ଅମୋଘ
ଜ୍ୟୋତି–ଶାୟକର ।

॥ ୨୪ ॥

ସେଇ ଏକାନ୍ତରେ ଦିଅ ଘରଟିଏ
ଯେଉଁଠିକି ସଭିଏଁ ଆସିବେ :
ସେଇ ଏକାନ୍ତ ହିଁ ସତ
ଯାହାକୁ ଛୁଇଁ ପାରିବେ ସଭିଏଁ ।
ମତେ ଏଇ ବର ଦିଅ
ସେଇ ଏକାନ୍ତରେ
ଦିଅ ଘରଟିଏ
ଯେଉଁଠିକି ସିଭିଏଁ ଆସିବେ–
ମୁଁ ନ ଆସେ !
ଯାହାକୁ ଛୁଇଁ ବି ପାରିବିନି ମୁଁ
ମତେ ଯାହା ଛୁଇଁବ
ଆବୋରିବ, ସମାହିତ କରିଦେବ ।

ଯେହେତୁ
ଯାହା ମୋ ଦ୍ୱାରା ଛୁଇଁହେଲା,
ମୋର ସ୍ପର୍ଶରେ ଦରକିଲା
ଆଶ୍ରୟ ନୁହେଁ, ତାହା,
ଦୁର୍ବଳ ସେଇ ଛତ୍ର :
ସେଇ ଏକାନ୍ତ ହିଁ ସତ

ଯାହାକୁ ଛୁଇଁବା ପାଇଁ ଯାଏ ତ
ଓଲଟି ପଡ଼ି ଭାଙ୍ଗିଯାଏ ମୁଁ।
ଲେଉଟି ପୁଣି ସେଇଠିକି ଆସେ
କିନ୍ତୁ ପାଏ ମୁଁ ଯାହା
ତାକୁ ସେ ଛୁଉଁଛି ସେ ମୁଁ ନୁହେଁ:
ତାହା ସଭିଏଁ, ସେମାନେ।
ସିଭଏଁ
ସିଏ ବି ଯିଏ
ଏହାର ଅବବୋଧ
ଆଣି ପାରିଲା ମୋ’ ପର୍ଯ୍ୟନ୍ତ।
ସେଇ ଏକାନ୍ତରେ ଘରଟିଏ ଦିଅ
ଏଇ ବରଦିଅ।

॥ ୨୫ ॥

ସମୁଦ୍ର ଆଉ ପୃଥିବୀ ମିଶୁଥିଲେ ଯେଉଁଠି
ସନ୍ଧିରେଖାରେ
ବସିଥିଲି ମୁଁ।

ଜାଣେନା
କାହିଁକି ସାଗର ଥିଲା ମୌନ
ପୃଥିବୀ କାହିଁକି ଥିଲା ମୁଖର।

ସନ୍ଧି ରେଖାରେ ବସି ମୁଁ ଆନମନା
ନିରେଖୁଥିଲି ସମୁଦ୍ରକୁ
କିନ୍ତୁ ଶୁଣୁଥିଲି ପୃଥିବୀକୁ।

ସମୁଦ୍ରର ଲହରୀରେ ଯାହାକିଛି ପଢୁଥିଲି
ଲେଖି ଯାଉଥିଲି ବାଲୁକାର ଲହରୀ ଉପରେ ।

ଜାଣେନା ମୁଁ
କାହିଁକି
ବସି ରହିଥିଲି ।

କିନ୍ତୁ ଏ ସବୁ
ସେତେବେଳେ ଥିଲା
ଯେତେବେଳେ ଦିନ ରହିଥିଲା ।
ପୁଣି ଯେତେବେଳେ
ପୃଥିବୀରୁ ଉଇଁଥିବା ସୂର୍ଯ୍ୟ
ଉତ୍ତାପରେ ଜୀର୍ଣ୍ଣ ହୋଇ
ସମୁଦ୍ର ଭିତରେ ଢଳିଗଲା—
ସେତେବେଳେ
ସନ୍ଧ୍ୟାର ଏକ ତୀର୍ଯକ କିରଣ ଉଠି
ତୀରପରି ବିଦ୍ଧ କରି ମତେ
ସେଇ ସନ୍ଧିରେଖାରେ ବାନ୍ଧି ହୋଇ
ଅଚାନକ ବୁଡ଼ିଗଲା ।
ପୁଣି ଧୀରେ ଧୀରେ
ରାତି ଘୋଟି ଆସିଲା, ପ୍ରସରିଗଲା
ପୁଣି ଅନ୍ଧାରରେ
ମୌନ ହେଲା ପୃଥିବୀ
ସମୁଦ୍ର ମୁଖର ହୋଇ
ଗାଇବାକୁ ଲାଗିଲା ଗୀତ ।

ମୋର ଆଉ କିଛି ଦେଖିବା-ଶୁଣିବାକୁ
ପଢ଼ିବା-ଲେଖିବାକୁ ବାକି ରହିଲା ନାହିଁ :
ଆପଣା ଭିତରେ
ଗହୀରରେ ମୁଁ ଚିହ୍ନିପାରିଲି
ଏହାହିଁ ଠିକ୍ ।
ସମୁଦ୍ର ହିଁ ଗାଉଗାଉ
ପୃଥିବୀ ଥାଉ ମୌନ,
ଏହାହିଁ ସମ୍ୟକ୍ ସ୍ଥିତି ।

ଯଦିଓ
ମୁଁ ଜାଣେନା
କାହିଁକି ।
ତାପରେ ମୁଁ ଚେଇଁଉଠିଲି ସ୍ୱପ୍ନରୁ ।

ହଁ, ଚେଇଁ ଉଠିଲି ।
କିନ୍ତୁ କ'ଣ ଏଇ ଚେଇଁଥିବା ମୁଁ
ଆଜିଠାରୁ ଯୁଗଯୁଗ ଧରି
ସେଇ ସନ୍ଧିରେଖାରେ ସେପରି
କିରଣ-ବିଦ୍ଧ ହୋଇ
ବନ୍ଧା ରହିଥିବି ?

॥ ୨୬ ॥

ଅଗଣା ସେପାଖେ
ଦ୍ୱାର ଖୋଲେ
ଦ୍ୱାର ସେପାଖେ ଅଗଣା ।

ଭବନର ଏପାଖେ—ସେପାଖେ
ସଭିଏଁ ମିଳିଲେ—
ତହିଁରେ କେଉଁଠି ହଜିଗଲା
ଭବନ ମୁକାମ :

କିଏ ଦ୍ୱାରୀ
କିଏ ଆଗାରୀ, କିଏ ଜାଣେ,
ହେଲେ ଦ୍ୱାରର ପ୍ରତିହାରୀକୁ
ଭିତରର ଦେବତା
ବାରଂବାର କଲା ପାଦ-ପ୍ରଣାମ ।

॥ ୨୭ ॥

ଦ୍ୱିତୀୟାର ଜହ୍ନ—

ମୋର ଛୋଟ ଘର୍—କୁଡ଼ିଆର ଦୀପ
ତୁମର ମନ୍ଦିରର ବିସ୍ତୃତ ବେଢ଼ା ଭିତରେ
ଶଙ୍କିଥିବା ପରି
ଥାପି ଦିଆଗଲା ।

□□

ଆସିଗଲେ ! ପ୍ରିୟଂବଦ
କେଶକମ୍ବଳୀ ! ଗୁମ୍ଫା-ଗେହ !
ରାଜା ଦେଲେ ଆସନ ।
କହିଲେ : କୃତକୃତ୍ୟ ହେଲି ମୁଁ ତାତ !
ବିଜେ କଲେ ଆପଣ ।
ଭରସା ଆସୁଛି ମୋର ଏବେ
ଜୀବନର ଲକ୍ଷ୍ୟ ମୋର ହେବ ଆଜି ପୂର୍ଣ୍ଣ ।''

ଲଘୁ ସଙ୍କେତ ବୁଝି ରାଜାଙ୍କର
ଗଣ ଦୌଡ଼ିଲେ !
ଆଣିଲେ ଅସାଧ ବୀଣା ;
ସାଧକ ଆଗରେ ଥୋଇ ତାକୁ,
ଅପସରି ଗଲେ ।
ସଭାର ଉତ୍ସୁକ ଆଖି
ବୀଣାକୁ ଥରଟେ ଦେଖି, ଲାଖିଗଲା
ପ୍ରିୟଂବଦର ବଦନରେ ।

''ଏଇ ବୀଣା ଉତ୍ତରାଖଣ୍ଡର ଗିରି ପ୍ରାନ୍ତରରୁ
—ଘଞ୍ଚବଣରେ ଯେଉଁଠି ତପସ୍ୟାକରନ୍ତି ବ୍ରତଚାରୀ—
ବହୁଦିନ ଆଗରୁ ଆସିଥିଲା ।
ସଂପୂର୍ଣ୍ଣ ଇତିହାସ ତ ଜାଣିପାରିନୁ ଆମେ :
କିନ୍ତୁ ଶୁଣିଛୁ
ବଜ୍ରକୀର୍ତ୍ତି ଯେଉଁ ମନ୍ତ୍ରପୂତ
ଅତି ପ୍ରାଚୀନ କିରୀଟୀ—ତରୁରୁ
ଗଢ଼ିଥିଲା ଯା'କୁ—
ତା'ର କାନରେ
ହିମ-ଶିଖର ରହସ୍ୟ ଶୁଣାଉଥିଲେ ଆପଣାର,

କାନ୍ଧ ଉପରେ ମେଘ ଶୋଉଥିଲେ,
ତା'ର ହାତୀ ଶୁଣ୍ଢ ପରି ଡାଳ
ହିମ ବର୍ଷାରେ
ସାରା ବନ ଯୂଥର କରି ଦେଉଥିଲେ ପରିତ୍ରାଣ,
କୋଟରରେ ଭାଲୁ ରହୁଥିଲେ,
ତାର ବଲ୍‌କଳରେ କାନ୍ଧ କୁଣ୍ଡାଇବାକୁ ଆସୁଥିଲେ।
ଆଉ—ଶୁଣାଯାଏ—
ଚେର ତା'ର ପହଞ୍ଚି ସାରିଥିଲା ପାତାଳ-ଲୋକ,
ତା'ର ଗନ୍ଧ-ପ୍ରବଣ ଶୀତଳତାରେ
ଫଣାଟେକା ନାଗବାସୁକୀ ଶୋଉଥିଲା।
ସେଇ କିରୀଟୀ-ତରୁରୁ ବଜ୍ରକୀର୍ତ୍ତି
ସାରା ଜୀବନ ଯା'କୁ ଗଢ଼ିଲା :
ହଂଠ-ସାଧନା ଏହାହିଁ ଥିଲା ସେଇ ସାଧକର—
ବୀଣା ପୂର୍ଣ୍ଣହେଲା,
ତା'ସହିତ ସାଧନା ସରିଲା
ସାଙ୍ଗ ହେଲା ଜୀବନଲୀଳା।"

ଦୀର୍ଘଶ୍ୱାସ ନେଇ ରାଜା ଟିକିଏ ଥମିଲେ
ପୁଣି କହିଲେ :
"ହାରିଗଲେ ମୋର ସମସ୍ତ ଗଣ୍ୟମାନ୍ୟ କଳାବନ୍ତ
ସଭିଙ୍କ ବିଦ୍ୟା ହୋଇଗଲା ବ୍ୟର୍ଥ,
ଦର୍ପ ହେଲା ଚୂର୍ଣ୍ଣ,
କୌଣସି ଜ୍ଞାନୀ-ଗୁଣୀ
ଆଜିଯାଏ ଯା'କୁ ସାଧି ନ ପାରିଲେ।
ଏବେ ଏଇ ଅସାଧ୍ୟ ବୀଣା ହିଁ ଖ୍ୟାତ ହୋଇଗଲା
କିନ୍ତୁ ଏବେ ବି ଅଛି ମୋର ବିଶ୍ୱାସ
କୃଚ୍ଛ୍ର-ତପ ବଜ୍ରକୀର୍ତ୍ତିର ବ୍ୟର୍ଥ ନ ଥିଲା।

ବୀଣା-ଗାଇବ ଅବଶ୍ୟ,
କିନ୍ତୁ ସେତେବେଳେ ଗାଇବ,
ସତ୍ୟ-ସ୍ୱର-ସିଦ୍ଧ ଜଣେ ଯେତେବେଳେ
କୋଳକୁ ତାକୁ ନେବ।
ତାତ ! ପ୍ରିୟଂବଦ ! ନିଅ, ଏଇ ସମ୍ମୁଖରେ ଅଛି
ବଜ୍ରକୀର୍ତ୍ତିର ବୀଣା,-
ଏଇଟି ମୁଁ, ଏଇ ରାଣୀ, ଏଇ ଭରା ସଭା :
ସଭିଏଁ ଉଦଗ୍ର, ପର୍ଯ୍ୟୁତ୍ସୁକ,
ଜନ-ମାତ୍ର ପ୍ରତୀକ୍ଷମାଣ !''

କେଶକମ୍ବଳୀ ଗୁଫା-ଗେହ ଖୋଲିଲା କମ୍ବଳ
ଧରିତ୍ରୀ ଉପରେ ଚୁପଚାପ ବିଛେଇଦେଲା।
ବୀଣା ତା'ଉପରେ ରଖି,
ପତା ବୁଜି, ପ୍ରାଣ ଟାଣି,
ପ୍ରମାଣ କରି,
ଅସ୍ପର୍ଶ ଛୁଆଁଣରେ ଛୁଇଁଲା ତାହାର ତା'ର।

ଧୀରେ କହିଲା : ''ରାଜନ୍ !
କଳାବନ୍ତ ନୁହେଁ କିନ୍ତୁ ମୁଁ,
ଶିଷ୍ୟ, ସାଧକ ମାତ୍ର—
ଜୀବନର ଅକୁହା ସତ୍ୟର ସାକ୍ଷୀ।
ବଜ୍ରକୀର୍ତ୍ତି !
ପ୍ରାଚୀନ କିରୀଟୀ ତରୁ !
ଅଭିମନ୍ତ୍ରିତ ବୀଣା !
ଏ ସବୁର ଧ୍ୟାନ—ମାତ୍ର ତ
ଗଦ୍‌ଗଦ ବିହ୍ୱଳ କରିଦେଉଛି।''

ଚୁପ୍ ହୋଇଗଲା ପ୍ରିୟଂବଦ।
ସଭା ବି ରହିଲା ମଉନ।

ବାଦ୍ୟ ଉଠାଇ ସାଧକ କୋଳାଗ୍ରତ କଲା ।
ଧୀରେ ଧୀରେ ତା'ଉପରେ ନଇଁ,
ତାର ଗୁଡ଼ିକ ଉପରେ ମଥା ଛୁଆଁଇଲା ।
ଚକିତ ଥିଲା ସଭା—ଆରେ,
ପ୍ରିୟଂବଦ ଶୋଇ ପଡ଼ିଲା କି ?
ପରାଭୂତ ହୋଇ ଅବା
କେଶକମ୍ବଳୀ
ନଇଁ ପଡ଼ିଲା ବାଦ୍ୟ ଉପରେ ?
ସତେ କ'ଣ ଅସାଧ୍ୟ ଏଇ ବୀଣା ?

କିନ୍ତୁ, ସେଇ ସ୍ପନ୍ଦିତ ନୀରବତାରେ
ମୌନ ପ୍ରିୟମ୍ବଦ ସାଧୁଥିଲା ବୀଣାକୁ—
ନା, ସ୍ୱୟଂ ନିଜକୁ ଶୋଧନ କରୁଥିଲା ।
ସଘନ ନିବିଡ଼ତାରେ ନିଜକୁ ସେ
ସମର୍ପି ଦେଉଥିଲା ସେ କିରୀଟୀ ତରୁକୁ
କେଉଁ ପ୍ରିୟଂବଦ ବା ଦମ୍ଭ କରି
ଅଭିମନ୍ତ୍ରିତ ଏଇ କାରୁବାଦ୍ୟର ସାମ୍ନାକୁ ଆସିବ ?
କିଏ ବଜାଇବ ଏଇ ବୀଣା
ଯାହା ଏକ ସାରାଜୀବନର ସାଧନା ?
ଭୁଲି ଯାଇଥିଲା କେଶକମ୍ବଳୀ ରାଜସଭାକୁ :
କମ୍ବଳ ଉପରେ ଅଭିମନ୍ତ୍ରିତ ଏକ ଏକଲା ପଣରେ
ବୁଡ଼ି ଯାଇଥିଲା
ଯହିଁରେ ସାକ୍ଷୀ ଆଗରେ ଥିଲା
ଜୀବିତ ସେଇ କିରୀଟୀ-ତରୁ
ଚେର ଯାହାର ଆଧାରିତ ଥିଲା ବାସୁକୀର ଫଣା ଉପରେ
ଯାହାର କାନ୍ଧ ଉପରେ ମେଘ ଶୋଉଥିଲେ
ଆଉ କାନରେ ଯାହାର
ହିମଗିରି କହୁଥିଲେ ଆପଣା ଗୁମର ।

ସମ୍ବୋଧିତ କରି ସେଇ ତରୁକୁ,
ପ୍ରିୟଂବଦ କରୁଥିଲା ନୀରବ ଏକାଳାପ ।

''ହେ ବିଶାଳ ତରୁ !
ଶତ ସହସ୍ର ପଲ୍ଲବନ ଆଉ ପତ୍ରଝଡ଼ା
ନିତ୍ୟ କରିଥିଲେ ଯାହାର ରୂପ ପ୍ରସାଧନ,
କେତେ ବର୍ଷା, କେତେ ଖଦ୍ୟୋତ
ଆରତି କରିଥିଲେ,
ଭ୍ରମର ଗୁଞ୍ଜରିତ କରିଥିଲେ ଦିନସାରା,
ରାତିରେ ଝିଲ୍ଲୀ
ଅକ୍ଲାନ୍ତ ମଙ୍ଗଳ ଗାନ ଶୁଣାଇଥିଲେ,
ସଞ୍ଜ-ସକାଳ ଅଗଣିତ
ଅଚିହ୍ନା ଖଗ-କୁଳର ମୋଦଭରା କ୍ରୀଡ଼ା କାକଳି
ଡାଳ-ଡ଼ାଳକୁ କମ୍ପିତ କରିଥିଲା—
ହେ ଦୀର୍ଘକାୟ !
ହେ ସମଗ୍ର ବନଖଣ୍ଡର ଅଗ୍ରଜ,
ତାତ, ସଖା, ଗୁରୁ, ଆଶ୍ରୟ,
ତ୍ରାତା, ମହଚ୍ଛାୟ,
ହେ ବ୍ୟାକୁଳ ମୁଖରିତ ବନ-ଧ୍ୱନିର
ବୃନ୍ଦଗାନର ମୂର୍ତ୍ତ ରୂପ,
ମୁଁ ଚାହେଁ ତତେ ଶୁଣିବାକୁ,
ଦେଖିବାକୁ, ଧ୍ୟାୟିବାକୁ
ଅନିମେଷ, ସ୍ତବ୍ଧ, ସଂଯତ, ସଂଯୁତ, ନିର୍ବାକ୍ :
କିପରି ସାହସ ପାଇବି
ତତେ ଛୁଇଁବାକୁ ?
ତୋର କାୟାରେ ରନ୍ଧ୍ର ଖୋଳି, ବାନ୍ଧି
ରଚିତ ଏଇ ବୀଣାକୁ

କେଉଁ ସ୍ପର୍ଦ୍ଧାରେ
ହାତ କରିବେ ଆଘାତ
ତାର ସବୁରୁ ଉକୁଟାଇବାକୁ ଗୋଟିଏ ଚୋଟରେ
ସେଇ ସଞ୍ଚିତ ସଙ୍ଗୀତ
ଯାହାକୁ ରଚିବାପାଇଁ କିଏ ଜାଣେ
କେତେ ଯେ କାହାର ସ୍ପନ୍ଦିତ ପ୍ରାଣ
ସ୍ୱୟଂ ରଚିଗଲେ ।

"ନା, ନା !
ବୀଣା ଏଇ ମୋର କୋଳରେ ଅଛି,
ଥାଉ,
କିନ୍ତୁ ମୁଁ ହିଁ ତ
ତୋର କୋଳରେ ବସିଥିବା ମୋଦଭରା ବାଳକ,
ହେ ତରୁ—ତାତ ! ସମ୍ଭାଳ ମତେ,
ମୋର ପ୍ରତ୍ୟେକ କିଳକ
ପୁଲକରେ ବୁଡ଼ିଯାଉ :
ମୁଁ ଶୁଣେ,
ଗୁଣେ,
ବିସ୍ମୟ ଭରି ଆଙ୍କେ
ତୋର ଅନୁଭବର ଏକ ଏକ ଅନ୍ତଃସ୍ୱର
ତୋର ଦୋଳନର ଲୋରିରେ
ଝୁମି ରହେ ମୁଁ ତନ୍ମୟ—
ଗା ତୁ :
ତୋର ଲୟରେ ମୋର ନିଃଶ୍ୱାସ ପ୍ରଶ୍ୱାସ
ଭରିଯାଉ, ପୂରିଯାଉ, ସରିଯାଉ, ବିଶ୍ରାନ୍ତି ପାଉ ।
"ଗା ତୁ !
ଏଇ ଥୁଆ, ହୋଇଛି ବୀଣା :

ତୋର ଅଙ୍ଗ ବିଭଙ୍ଗ
କିନ୍ତୁ ଅଙ୍ଗୀ, ତୁ ଅକ୍ଷତ, ଆତ୍ମ-ଭରିତ,
ରସବିଦ୍,
ତୁ ଗା :
ମୋର ଅନ୍ଧାରୁଆ ହୃଦୟରେ ଆଲୋକ ଉକୁଟା—
ସ୍ମୃତିର
ଶ୍ରୁତିର—
ତୁ ଗା, ତୁ ଗା, ତୁ ଗା, ତୁ ଗା !
''ହଁ, ମୋର ସ୍ମରଣ ଅଛି :
ଖଣ୍ଡ ଖଣ୍ଡ ମେଘ, ପ୍ରଖର ବିଜୁଳି—
ପତ୍ର ଉପରେ ବର୍ଷାବୁନ୍ଦାର ଟପ୍ ଟପ୍ ଟପ୍।
ଘନ ରାତିରେ ମହୁଲର ଚୁପ୍ ଚାପ୍ ଝଡ଼ିପଡ଼ିବା।
ଚମକି ପଡ଼ିଥିବା ପକ୍ଷୀଶାବକର ଚିଁ ଚିଁ ଶବ୍ଦ।
ପାଷାଣକୁ ଆଦର କରୁଥିବା ବନ-ଝରଣାର
ଦ୍ରୁତ, ଲହରିତ ଜଳର କଳ—ନିନାଦ।
କୁହୁଡ଼ିରେ ଛାଣିହୋଇ ଆସୁଥିବା
ପାହାଡ଼ିଆ ଗାଁର
ପର୍ବରେ ବାଜୁଥିବା ଢୋଲର ଶବ୍ଦ।
ଗାଈଆଳର ଆନମନା ବଂଶୀସ୍ୱର।
କାଠହଣାର ଠକ୍ଠକ୍ ପାହାର।
ଫୁଲଶୁଂଘା ପକ୍ଷୀର ଆତୁର ଡେଣା ଫଡ଼୍ଫଡ଼୍।
ଶିଶିର ବିନ୍ଦୁର ଢଳ ଢଳପଣ
ଏତେ କୋମଳ ଏତେ ତରଳ ଯେ
ଝରୁ ଝରୁ ଯେପରି ପାଲଟି ଗଲା
ଗଙ୍ଗଶିଉଳି ଫୁଲ।
ଭରା ଶରତର ତାଳ, ଲହରୀର ଶିହରଣ-ଧ୍ୱନି।

କ୍ରୌଂଚର କାକଳି।
ଭଦଭଦଳିଆର ବିଲମ୍ବିତ କାନ୍ଦ।
ପକ୍ଷଯୁକ୍ତ ନାରାଚ ପରି ହଂସ-ବଳାକା।
ପାଇନ୍ ବନରେ
ଗନ୍ଧ-ଅନ୍ଧ, ଉନ୍ମଦ ମାତଙ୍ଗର
ଇତସ୍ତତଃ ଧକ୍କା
ଜଳପ୍ରପାତର ପ୍ଳୁତ ଏକସ୍ୱର।
ଝିଙ୍କାରି ଓ ବେଙ୍ଗ, କୋକିଳ ଓ ଚାତକର
ଝଙ୍କାର ଆଉ ଡାକର ଯତିପାତରେ
ସଂସ୍କୃତିର ଧ୍ୱନି।
''ହଁ, ମୋର ସ୍ମରଣ ଅଛି :
ଦୂର ପାହାଡ଼ରୁ କଳାମେଘମାନଙ୍କର ବନ୍ୟା
କୁହାଟୁଥିବା ହାତୀ ଯୂଥ। ଉଠନ୍ତା ଚକର ଘର୍ଘର।
କୂଳର ବାଲି ଅତଡ଼ା ଖସିବାର ଭୁସ୍‌ଭାସ୍।
ଝଂକାର ଫୁତ୍‌କାର, ତପ୍ତ,
ଗଛମାନଙ୍କର ଧଡ଼୍‌ଧଡ଼ାସ୍ ଭାଙ୍ଗି ଟଳି ପଡ଼ିବା।
କୁଆପଥରର ତୀବ୍ର ମାଡ଼।
ଜମିଯାଇଥିବା ବରଫରେ ମଲା ଶୁଖିଲା ଘାସ।
ସ୍ନିଗ୍ଧ କିରଣରେ
ଟାଣ ମାଟିର ଧୀରେ ଧୀରେ ସ୍ରବିବା।
ହିମ-ତୁଷାରର ତୁଳା ଭଳି ବରଫ କଣା
ଚୁପଚାପ୍ ଆଉଁସନ୍ତି ଧରିତ୍ରୀର ଘା।
ଘାଟିଗୁଡ଼ିକରେ ଭରିଥିବା
ଧସୁଥିବା ଚଟାଣଗୁଡ଼ିକର ପ୍ରତିଧ୍ୱନି–
କମ୍ପୁଥିବା ମନ୍ଦ୍ରଧ୍ୱନି ପ୍ରତିଧ୍ୱନି
ହଜି ଯାଉଥିବା ନିଃଶ୍ୱାସ ପରି
ଧୀରେ ଧୀରେ ନୀରବ।

‘‘ମୋର ସ୍ମରଣ ଅଛି
ଶାଗୁଣା ଘାଟିରେ, ଛୋଟଗଛର ଆଢୁଆଳରେ
ବନ୍ଧାସମୟ,
ବନପଶୁଙ୍କର ନାନାବିଧ ଆତୁର–ତୃପ୍ତ ଡାକ
ଗର୍ଜନ, ଘର୍ଘର, ଚିତ୍କାର,
ଭୋ ଭୋ, ହୁକେ ହୋ, ଚିଁ ଚିଁ ରଡ଼ି।
ପଦ୍ମ-କଇଁ-ପତ୍ର ଉପରେ
ଚୋରାପାଦରେ ଦ୍ରୁତ—ଧାବିତ
ଜଳ ପକ୍ଷୀର ଖେଳା।
ବେଙ୍ଗର ଚକିତ ଛଲାଂଗ୍।
ପଥଗାମୀର ଅଶ୍ୱର ଅଧୀର ଟାପୁଶବ୍ଦ।
ଅଚଞ୍ଚଳ ଧୀର ଶବ୍ଦ
ମଇଁଷିମାନଙ୍କର ଓଜନିଆ ଖୁରାର।

‘‘ମୋର ସ୍ମରଣ ଅଛି
ଝାପ୍‌ସା ସକାଳର ଆକାଶ
ଉହୁଙ୍କେ ଦିଗନ୍ତରୁ,
ଭୋର୍‌ର ପହିଲି କିରଣ
ଯେବେ ଅନାଏ ଶିଶିର ବିନ୍ଦୁକୁ—
ସେଇ ମୁହୂର୍ତ୍ତରେ ସହସା
ଚମକି ଉଠିଥିବା ଶିହରଣ।
ଦ୍ୱିପ୍ରହରରେ ଯେବେ
ଘାସଫୁଲ ଫୁଟେ ଅଦେଖା
ଅସଂଖ୍ୟ ମହୁମାଛି ଝୁମିଝୁମି ଗୁଣୁଗୁଣାନ୍ତି—
ସେଇ ଦୀର୍ଘ ବିଳମ୍ବିତ ମୁହୂର୍ତ୍ତରେ
ତଂନ୍ଦ୍ରାଳସ ସ୍ଥଗନ।
ଏବଂ ସଞ୍ଜରେ
ଯେତେବେଳେ ତାରାମାନଙ୍କର ତରଳ କମ୍ପନ

ସ୍ପର୍ଶହୀନ ହୋଇ ଝରେ—
ସତେ ଯେପରି
ଆକାଶରେ ତରଳ ନୟନ ସ୍ଥିର
ଅସଂଖ୍ୟ ସବତ୍ସା ଯୁବତୀ ମାତାଙ୍କର ଆଶୀର୍ବାଦ—
ସେଇ ସଂଧି—ନିମିଷର ପୁଲକନ
ଲୀୟମାନ।

"ମୋର ସ୍ମରଣ ଅଛି
ଏବଂ ପ୍ରତ୍ୟେକ ଚିତ୍ର
ସ୍ତବ୍ଧ, ବିଜଡ଼ିତ କରେ ମତେ।
ମୁଁ ଶୁଣେ,
ପ୍ରତ୍ୟେକ ସ୍ୱର-କମ୍ପନ କିନ୍ତୁ
ମୋ'ଠାରୁ ମତେ ନିଏ ଶୋଷି,
ମୁଁ ଉଡ଼ିଯାଏଁ
ବାୟୁ ପରି ନାଦଭରା ହୋଇ.....
ମୋର ସ୍ମରଣ ଅଛି—
କିନ୍ତୁ ମୁଁ ଭୁଲିଯାଇଛି ଆପେ ଆପଣାକୁ :
ଶୁଣେ ମୁଁ—
କିନ୍ତୁ ମୁଁ ନିଜଠୁ ଅଲଗା, ଶବ୍ଦରେ ଲୀୟମାନ।
"ମୁଁ ନାହିଁ, ନାହିଁ! କେଉଁଠି ବି ନାହିଁ!
ହେ ତରୁ! ହେ ବନ!
ହେ ସ୍ୱର—ସମ୍ଭାର!
ନାଦମୟ ସଂସ୍କୃତି!
ହେ ରସ—ପ୍ଲାବନ!
ମତେ କ୍ଷମାକର—
କ୍ଷମା କର୍ ମୋର ଅକିଞ୍ଚନତାର ଭୁଲ୍
ମତେ ଆଢୁଆଳ ଦେ, ଢାଙ୍କିଦେ, ଛାଇ ଯା'—
ହେ ଶରଣ୍ୟ!

ମୋର ମୂକତ୍ୱକୁ
ତୋର ସୁପ୍ତ ସ୍ୱର—ସାଗରର ଜୁଆର
ବୁଡ଼େଇ ଦେଉ !
ଆ, ମତେ ଭୁଲି,
ତୁ ଉତୁରିଯା’ ବୀଣାର ତାରରେ
ନିଜଠି ତୁ ଗା
ନିଜକୁ ଗା—
ନିଜର ପକ୍ଷୀକୁଳକୁ ମୁଖରିତ କର—
ନିଜ ଛାୟାରେ ପାଳିତ ମୃଗମାନଙ୍କର
ଡେଇଁ ଡେଇଁ ଧାଇଁବାର ଗତିକୁ
ତାଳବଦ୍ଧ କର୍,
ଆପଣାର ଛାଇ-ଖରା, ବର୍ଷା-ପବନ
ପଲ୍ଲବନ-ପୁଷ୍ପାୟନର ଲୟରେ
ଜୀବନ-ସଞ୍ଚୟକୁ ନିଜର ଛନ୍ଦମୟ କର୍
ବାଣୀ ଦେ ନିଜର ପ୍ରଜ୍ଞାକୁ !
ତୁ ଗା, ତୁ ଗା—
ତୁ ସନ୍ନିଧିପା—ତୁ ହଜିଯା
ତୁ ଆ—ତୁ ଅଛୁ—ତୁ ଗା । ତୁ ଗା !”
ରାଜା ଚେଇଁଲେ ।
ସମାଧିସ୍ଥ ସଙ୍ଗୀତ ଶିଳ୍ପୀର ହାତ ଉଠିଥିଲା—
କମ୍ପିଥିଲା ଆଙ୍ଗୁଠି ।
ଅଳସ ଅଙ୍ଗଭଙ୍ଗୀ କରି ସତେ ଯେମିତି
ଜାଗି ଉଠିଥିଲା ବୀଣା :
କୁହାଟି ଉଠିଥିଲେ ସ୍ୱର—ଶିଶୁ ।
ନୀରବ ପାଦ ଥାପି ଜାଲବାନ୍ ମାୟାବୀ
କୁଶଳୀ ହାତରେ ଧୀରେ ଧୀରେ ଧୀରେ
ବିଛାଇ ଚାଲିଥିଲା

ସୁବର୍ଣ୍ଣ ତାରର ଜାଲ ।

ହଠାତ୍ ଝଙ୍କାରି ଉଠିଲା ବୀଣା—
ସଙ୍ଗୀତ ଶିଳ୍ପୀର ଆଖିରେ ଝଲସିଗଲା
ଶୀତଳ ତରଳ ଜ୍ୱାଳାପରି କିଛି—
ବିଜୁଳି ପରି
ସଂଚରିଗଲା ସଭିଙ୍କ କାୟାରେ ରୋମାଞ୍ଚ ।
ଓହ୍ଲାଇ ଆସିଲା ସଙ୍ଗୀତ
ସ୍ୱୟଂଭୂ
ଯହିଁରେ ଶୁଏ ଅଖଣ୍ଡ
ବ୍ରହ୍ମାଙ୍କର ମୌନତା
ଅଶେଷ ପ୍ରଭାମୟ ।

ଏକାସାଙ୍ଗରେ ବୁଡ଼ିଗଲେ ସମସ୍ତେ ।
ସମସ୍ତେ ଅଲଗା—ଅଲଗା
କୂଳରେ ଲାଗିଲେ
ଏକା ଏକା ।
ରାଜା ଅଲଗା ଶୁଣିଲେ :
"ଜୟ ଦେବୀ ଯଶଃକାୟ
ବରମାଲ୍ୟ ଧରି
ଗାଉଥିଲା ମଙ୍ଗଳ—ଗୀତ,
ଦୂରରେ କେଉଁଠି ବାଜୁଥିଲା ଦୁନ୍ଦୁଭି,
ହଠାତ୍ ହାଲୁକା ହୋଇପଡ଼ିଥିଲା ରାଜମୁକୁଟ
ସତେ ଯେପରି ଶିରିଷ ଫୁଲର !
ଈର୍ଷା, ଉଚ୍ଚାଭିଳାଷ, ଦ୍ୱେଷ, ଚାଟୁକାରିତା
ଝଡ଼ିଗଲେ ସବୁକିଛି ପୁରୁଣା ଲୁଗା ପରି
ଝଟକି ଆସିଲା ଜୀବନ-କାଞ୍ଚନ
ଯାହା ସେ ଉଜେଇଁ ଦେବେ
ଧର୍ମର ଭାବରେ ।

ରାଣୀ ଅଲଗା ଶୁଣିଲେ :
ଚଳନ୍ତା ମେଘରେ ଝଲସି କହିଗଲା ବିଜୁଳି
ତୁମର ଏଇ ମଣି ମାଣିକ
କଣ୍ଠହାର, ପାଟ
ମେଖଳା—କିଙ୍କିଣୀ—
ସବୁ ତ ଅନ୍ଧକାରର କଣିକା !
ଆଲୋକ ଏକ, ପ୍ରେମ ଅନନ୍ୟ !
ତାହାରି ବିଦ୍ୟୁତ୍‌ଲତା ଘେରି ପକାଉଥାଏ
ରସଭାର ମେଘକୁ,
ଥମିଯାଇ ପୁଣି ତା'ରି ଛାତିରେ ଲୁଚି
ଶୋଇଯାଏ ଆଶ୍ୱସ୍ତ ହୋଇ
ସହଜ ବିଶ୍ୱାସରେ ।
ରାଣୀ
ପାଳିବେ ସେଇ ଏକୋଇର ପ୍ରୀତିକୁ ।

ସଭିଏଁ ଶୁଣିଲେ ଅଲଗା ଅଲଗା ସଂଗୀତ ।
ଯା'ପାଇଁ
କୃପା—ବାକ୍ୟ ତାହା ପ୍ରଭୁମାନଙ୍କର—
ତା'ପାଇଁ
ଆତଙ୍କ—ମୁକ୍ତିର ଆଶ୍ୱାସନ :
ଯା'କୁ
ଭରା-ସିନ୍ଦୁକରେ ସୁନାର ଋଣୁଝୁଣୁ—
ତା'କୁ
ବହୁଦିନ ପରେ ତବତ ଭାତର ମହକ
ହାଂଡ଼ି ଭିତରେ ।
ଜଣେ କାହାକୁ
ଭୁଆସୁଣୀର ପାଉଁଜର ଧିମା ଧିମା ଛମ୍-ଛମ୍ ।
ଆଉ କାହାକୁ ଶିଶୁର କିଳିକିଳା ।

ଜଣେ କାହାକୁ ଜାଲ—ବନ୍ଦୀ ମାଛର ଛଟପଟ—
ଆଉ ଜଣକୁ
ମୁକ୍ତ ଆକାଶରେ ଉଡୁଥିବା ପକ୍ଷୀର
କାକଳୀ ।
ତୃତୀୟ ଜଣକୁ ହାଟର ଠେଲାପେଲା ଗୋଳ
ଗରାଖମାନଙ୍କର ବହପଭରା କୁହାଟ,
ଚତୁର୍ଥ ଜଣକୁ
ମନ୍ଦିରର ତାଳଯୁକ୍ତ ଘଣ୍ଟଧ୍ୱନି ।
ଏବଂ ପଞ୍ଚମକୁ
ଲୁହା ଉପରେ ପିଟି ହେଉଥିବା
ହାତୁଡ଼ିର ମାଡ଼ପରି ଚୋଟ ।
ଏବଂ ଷଷ୍ଠ ଜଣକୁ
ଲଙ୍ଗରରେ ବନ୍ଧା ଥାଇ ଶିହରୁଥିବା ନୌକା ଉପରେ
ଲହଡ଼ି ସବୁର ଅବିରାମ ଥାପୁଡ଼ା ।
ଗୋଡ଼ି ଉପରେ ଚାଲନ୍ତା ଜୋତାର ରୁଦ୍ଧଚାପ
ସପ୍ତମ ପାଇଁ ।
ଏବଂ ଅଷ୍ଟମକୁ
ବିଲର ହିଡ଼ କଡ଼େକଡ଼େ ବୋହିଯାଉଥିବା ପାଣିର
କୁଳୁକୁଳୁ କୁଳୁକୁଳୁ ।
ଯା'କୁ
ନର୍ତ୍ତକୀର ପାଦ-ଘୁଙ୍ଗୁରର ଗମକ—
ତା'କୁ ଯୁଦ୍ଧର ଢୋଲ ନିନାଦ ।
ଯା'କୁ ଗୋଧୂଳି ସଞ୍ଜର ମୃଦୁ ଝୁଣୁଝୁଣୁ—
ତା'କୁ ପ୍ରଳୟର ଡମ୍ବରୁ—ନାଦ ।
ଯା'କୁ ଜୀବନର ପ୍ରଥମ ଦୋଳନ
ତା'କୁ କିନ୍ତୁ ମହାଜୃମ୍ଭ ବିକରାଳ କାଳ !

ସମସ୍ତେ ବୁଡ଼ିଲେ, ପହଁରିଲେ
ଉଠିଲେ, ଜାଗିଲେ,
ହୋଇ ବଶଂବଦ ସ୍ତବ୍ଧ :
ଇୟତ୍ତା ସଭିଙ୍କର ଭିନେ ଭିନେ ଜାଗିଲା,
ସଂଘିତ ହେଲା,
ବିଲୟ ପାଇଗଲା ।

ବୀଣା ପୁଣି ମୂକ ହୋଇଗଲା ।

''ସଧୁ ! ସାଧୁ !!''
ରାଜା ଓହ୍ଲାଇଲେ ସିଂହାସନରୁ–
ରାଣୀ ବାଣୀରେ ଅର୍ପିତ ହେଲା ସାତକେରା ମାଳି
ବିହ୍ୱଳ ଜନତା କହି ଉଠିଲା, ''ଧନ୍ୟ !
ହେ ସ୍ୱରଜିତ୍ !
ଧନ୍ୟ ! ଧନ୍ୟ !''

ସଙ୍ଗୀତ ଶିଳ୍ପୀ
ଧୀରେ ଧୀରେ ତଳେ ଥୋଇ
ବୀଣାକୁ ଢାଙ୍କିଦେଲା,
କୋଳରେ ଶୋଇଥିବା ଶିଶୁକୁ
ଦୋଳିରେ ଥାପି ମୁଗ୍ଧା ମା ଯେପରି
ଘୁଂଚି ଆସେ
ଦୃଷ୍ଟିରେ ତା'ର ଆଉଁସି ସାଉଁଳି ।
ଉଠି ଠିଆ ହେଲା ।
ବଢ଼ି ଆସୁଥିବା ରାଜାର ହାତକୁ
ବର୍ଜନ କରି
କହିଲା :
''ଶ୍ରେୟ କିଛି ନାହିଁ ମୋର :

ମୁଁ ତ ସ୍ୱୟଂ ବୁଡ଼ିଯାଇଥିଲି ଶୂନ୍ୟରେ–
ବୀଣାର ମାଧ୍ୟମରେ ଆପଣାକୁ ମୁଁ
'ସବୁକିଛି'କୁ ସମର୍ପି ଦେଇଥିଲି–
ଶୁଣିଲେ ଆପଣ ଯାହା,
ନୁହେଁ ମୋର ତାହା
ବୀଣାର ବି ନ ଥିଲା :
ତାହା ତ 'ସବୁକିଛି'ର 'ତଥତା' ଥିଲା
ମହାଶୂନ୍ୟ
ସେଇ ମହାମୌନ
ଅବିଭାଜ୍ୟ, ଅନାପ୍ତ, ଅଦ୍ୱୟିତ, ଅପ୍ରମେୟ
ଯାହା ଶବ୍ଦହୀନ
ସଭିଙ୍କଠି ଯେ ଗାଏ।"
ଦଣ୍ଡବତ ହୋଇ ବୁଲି ପଡ଼ିଲା
ପ୍ରିୟଂବଦ କେଶକମ୍ବଳୀ।
କମ୍ବଳ ନେଇ
ଗୁହାଗେହକୁ ବାହୁଡ଼ିଗଲା
ଭାଙ୍ଗିଗଲା ସଭା।
ସଭିଏଁ ଆପଣା ଆପଣା କାମରେ ଲାଗିଲେ।
ଯୁଗ ବଦଳିଲା।

ପ୍ରିୟ ପାଠକ!
ଏହିପରି ମୋର ବାଣୀ ବି
ମୌନ ହୋଇଗଲା।

□□

'ଅଂଗନ କେ ପାରଦ୍ୱାର' ୧୯୫୯ ରୁ ୧୯୬୧ ମସିହା ମଧ୍ୟରେ ଲିଖିତ ଅଜ୍ଞେୟଙ୍କର କବିତା ସଂକଳନ । ଜୀବନର ମୂଲ୍ୟବୋଧକୁ ଖୋଜିବାରେ ଅଜ୍ଞେୟଙ୍କର ଗଭୀର ମାନସିକତା ଏବଂ ଚିନ୍ତାଧାରାର ସୂକ୍ଷ୍ମରୂପ ପ୍ରକାଶ ପାଇଛି କବିତା ଗୁଡିକରେ । ଅନ୍ତଃସଲିଳା, ଚକ୍ରାନ୍ତଶିଳା, ଅସାଧ୍ୟବୀଣା ଏହିପରି ତିନୋଟି ପର୍ଯ୍ୟାୟରେ ଲିଖିତ କବିତାଗୁଡ଼ିକର ସ୍ୱର [illegible] ବେଶ୍ ମାର୍ମିକ । ଜୀବନର ତୀକ୍ଷ୍ଣ ଅନୁଭୂତି ଓ ଅଭିଜ୍ଞତାର ଉଷ୍ଣ ଆବେଗ ହେଉଛି ଏହି 'ଅଗଣା ସେପାଖ ଦ୍ୱାର' ।

ସଚ୍ଚିଦାନନ୍ଦ ହୀରାନନ୍ଦ ବାତ୍ସ୍ୟାୟନ 'ଅଜ୍ଞେୟ' (ଜନ୍ମ ୧୯୧୧) ହିନ୍ଦୀ ସାହିତ୍ୟର ଜଣେ ପ୍ରଖ୍ୟାତ କବି, ଉପନ୍ୟାସକାର ଏବଂ ସମାଲୋଚକ । ପରବର୍ତ୍ତୀ ସମୟରେ ଜଣେ ସଂପାଦକ ଏବଂ ସାହିତ୍ୟ ସଂସ୍କୃତିର ଅଧ୍ୟାପକଭାବରେ ନିଜ କାର୍ଯ୍ୟଦକ୍ଷତାର ପ୍ରମାଣ ଦେଇଛନ୍ତି । 'ଶେଖର: ଏକ ଜୀବନୀ' ଉପନ୍ୟାସ ପାଇଁ ମଧ୍ୟ ସେ ଖ୍ୟାତ । ଜୀବନକାଳ ମଧ୍ୟରେ ଅନେକ କବିତା, ଗଳ୍ପ, ଉପନ୍ୟାସ, ଭ୍ରମଣ କାହାଣୀ, ସମାଲୋଚନା ଏବଂ ରମ୍ୟରଚନା ଲେଖି ନିଜକୁ ପ୍ରତିଷ୍ଠିତ କରାଇପାରିଛନ୍ତି । ଜ୍ଞାନପୀଠ ପୁରସ୍କାରପ୍ରାପ୍ତ ଏହି କବି ଜଣଙ୍କୁ ୧୯୬୪ ମସିହାରେ ତାଙ୍କର ଏହି କବିତା ସଂକଳନ ପାଇଁ ସାହିତ୍ୟ ଅକାଦେମି ପୁରସ୍କୃତ କରେ ।

'ଅଜ୍ଞେୟ'ଙ୍କର ଏହି ମନୋଜ୍ଞ ସଂକଳନକୁ ଓଡ଼ିଆରେ ଅନୁବାଦ କରିଛନ୍ତି କବି ତଥା ଅନୁବାଦିକା ଶ୍ରୀମତୀ ସୌଭାଗ୍ୟ ମଞ୍ଜରୀ [illegible] । ସଂକଳନଟି ଓଡ଼ିଆ ପାଠକବର୍ଗଙ୍କୁ ମୂଳଗ୍ରନ୍ଥର ସ୍ୱାଦ ଆଣିଦେବାରେ ଅବଶ୍ୟ [illegible] କରିବ ।

ISBN : 81-260-0973-X
ମୂଲ୍ୟ : ୫୫ ଟଙ୍କା

ପ୍ରଚ୍ଛଦ : ବଳଦେବ ମହାରଥୀ